# ଉତ୍କଳ କାହାଣୀ

৺ ଗୋପାଳଚନ୍ଦ୍ର ପ୍ରହରାଜ, ବି. ଏଲ୍. ସଂଗୃହୀତ ।

ଶ୍ରୀ ରମଲ୍ଲ କର ପ୍ରକାଶିତ ।

ଦଶମ ସଂସ୍କରଣ

UTKAL SAHITYA PRESS
P.O. CHANDNICHAUK
CUTTACK

ମୂଲ୍ୟ ଏକ ଟଙ୍କା ଦୁଇ ଅଣା ମାତ୍ର ।

## ସମର୍ପଣ ।

ଏ କ୍ଷୁଦ୍ର ପୁସ୍ତିକା ଖଣ୍ଡି

'ଉତ୍କଳ ସାହିତ୍ୟ'ର

ସୁଯୋଗ୍ୟ ସମ୍ପାଦକ

ଶ୍ରୀଯୁକ୍ତ ବିଶ୍ୱନାଥ କର ମହୋଦୟଙ୍କ

ହସ୍ତରେ ଶ୍ରଦ୍ଧାର ଚିହ୍ନସ୍ୱରୂପ

ଅର୍ପଣ କଲି ।

ପ୍ରଣତ

ଗୋପାଳ୍

# ଭୂମିକା

ସମସ୍ତ ଦେଶର ସାହିତ୍ୟର ଅଲୋଚନା କଲେ ଦେଖାଯିବ ଯେ ଗାଳଗଳ୍ପ (Fiction) ସାହିତ୍ୟର ଗୋଟିଏ ନିତାନ୍ତ ନଗଣ୍ୟ ଅଙ୍ଗ ନୁହେ । ଗ୍ରୀସ, ଇଟାଲି, ପାରସ୍ୟ, ଇଂଲଣ୍ଡ ଓ ଜର୍ମାନୀ ଦେଶମାନଙ୍କର ସାହିତ୍ୟଚୟ ଏଥିର ଜ୍ୱଳନ୍ତ ଉଦାହରଣ । ପ୍ରତ୍ୟେକ ଇଂରାଜୀଭାଷାଭିଜ୍ଞ ବ୍ୟକ୍ତି Æsop's Fable ସହିତ ନିତାନ୍ତ ଅପରିଚିତ ନୁହନ୍ତି । ନୀତିଶିକ୍ଷାଚ୍ଛଳରେ କେତେକ ଜୀବଜନ୍ତୁଙ୍କ କଥୋପକଥନ ଓ ବ୍ୟବହାର ଉକ୍ତ ପୁସ୍ତକରେ ସନ୍ନିବେଶିତ ହୋଇଅଛି । ଭାରତର ପ୍ରାଚୀନ ସାହିତ୍ୟରେ ବେତାଳପଞ୍ଚବିଂଶତି, ବତିଶ ସିଂହାସନ ଓ ହିତୋପଦେଶରେ ମଧ୍ୟ ଏହିପରି କେତେକ ନୀତିଗର୍ଭ ଗଳ୍ପ ସନ୍ନିବେଶିତ ହୋଇଅଛି । କିନ୍ତୁ ଏମାନ ସ୍ୱଳ୍ପବୁଦ୍ଧି ବାଳକବାଳିକାମାନଙ୍କର ସହଜରେ ବୋଧଗମ୍ୟ ହେବା ଦୁର୍ଲଭ । କାରଣ ଏଥିରେ କଳ୍ପନାଶକ୍ତିର ବିଶେଷ ପରିଚାଳନା ଓ ପରିଚାଳିତ କଳ୍ପନାଶକ୍ତିର ମାଧୁର୍ଯ୍ୟ ଉପଲବ୍ଧି ଅବଶ୍ୟମ୍ଭାବୀ ହୋଇ ଉଠେ । ଯାହା ହେଉ, ଶୁଷ୍କ ନୀତିଶିକ୍ଷାକୁ ସରସ କରିବା ଉପର୍ଯ୍ୟୁକ୍ତ ପୁସ୍ତକମାନଙ୍କର ପ୍ରଧାନ ଉଦ୍ଦେଶ୍ୟ ମଧ୍ୟରେ ପରିଗଣିତ । ସୁକୁମାରମତି ବାଳକବାଳିକାମାନଙ୍କୁ ଶିକ୍ଷା ଦେବା ଓ ସଙ୍ଗେ ସଙ୍ଗେ ଚିତ୍ତାକର୍ଷିତ କରିବା ଉକ୍ତ ପୁସ୍ତକମାନଙ୍କର ଲକ୍ଷ୍ୟ; କିନ୍ତୁ ଶିକ୍ଷଣୀୟ ବିଷୟ ସର୍ବତୋଭାବରେ ଚିତ୍ତାକର୍ଷକ ହେବା ସର୍ବଦା ଆଶା କରାଯାଇ ନ ପାରେ । ଇଂଲଣ୍ଡର Nursery Tales (ଧାତ୍ର୍ୟାଳୟର ଗଳ୍ପନିଚୟ) ଯେପରି ନିତାନ୍ତ ଅଳ୍ପବୟସ୍କ ବାଳକବାଳିକାମାନଙ୍କର ଉପଯୋଗୀ ବୋଧ ହୁଏ, ତଦ୍ରୂପ ସ୍ୱଳ୍ପବୟସ୍କ ବାଳକବାଳିକାମାନଙ୍କ ମନୋମୁଗ୍ଧକର ଗଳ୍ପ ପ୍ରତ୍ୟେକ ଦେଶର ସାହିତ୍ୟରେ ବିଦ୍ୟମାନ । ବଙ୍ଗଳାର ଖ୍ୟାତନାମା ଲେଖକ ଶ୍ରୀଯୁକ୍ତ ଲାଲବିହାରୀ ଦେ

କିଛୁକାଳ ପୂର୍ବେ ବଙ୍ଗଦେଶପ୍ରଚଳିତ କାହାଣୀମାନଙ୍କୁ ଇଂରାଜୀ ଭାଷାରେ ପ୍ରକାଶ କରିଥିଲେ । ଉକ୍ତ ପୁସ୍ତକର ଅଧିକାଂଶ ଗଳ୍ପ ବର୍ତ୍ତମାନ ଉତ୍କଳର ଅନେକ ପିତାମହୀ ଓ ପ୍ରପିତାମହୀଙ୍କର ପ୍ରଧାନ ସମ୍ବଳ । ସ୍ଥାନବିଶେଷରେ ଅଧିବାସୀମାନଙ୍କ ରୁଚିର ପାର୍ଥକ୍ୟ ଅନୁସାରେ ଏକ ଗଳ୍ପ ବିଭାଗବିଶେଷରେ ପରିବର୍ତ୍ତିତ, ପରିମାର୍ଜିତ, ପରିବର୍ଦ୍ଧିତ ବା କର୍ତ୍ତିତ ହୋଇ ଭିନ୍ନ ଭିନ୍ନ ରୂପ ଓ ଅବୟବ ଧାରଣ କରିଅଛି । ଉତ୍କଳଦେଶର ଏକ ଅଂଶରେ ବର୍ଷୀୟସୀମାନଙ୍କ ମୁଖରୁ ଯେଉଁ ଗଳ୍ପଟି ଶୁଣାଯିବ, ତାହା ଅନ୍ୟ ଅଂଶରେ ପ୍ରଚଳିତ ଗଳ୍ପଠାରୁ ଅବଶ୍ୟ କେତେକ ପରିମାଣରେ ବିଭିନ୍ନ, ଏଥିରେ ସନ୍ଦେହ ନାହିଁ । କେହି କେହି ଏପରି ମନେ କରି ପାରନ୍ତି ଯେ, କ୍ଷୁଦ୍ରବୁଦ୍ଧି ବାଳକବାଳିକାମାନଙ୍କ ନିମନ୍ତେ କଳ୍ପିତ କାହାଣୀମାନ ସାହିତ୍ୟର ଅଙ୍ଗ ବୋଲି କିପରି ବିବେଚିତ ହେବ ? ଏହାର ଉତ୍ତରରେ ଏତିକି ମାତ୍ର ବୋଲିଯାଇ ପାରେ ଯେ, ଦେଶପ୍ରଚଳିତ କାହାଣୀମାନ ଦେଶବିଶେଷର ରୁଚିର ପରିମାପକ ଅଟେ ଏବଂ ଏହି ବାଲଯୋଗ୍ୟ କାହାଣୀମାନ କେତେକ ଏକତ୍ରିତ କରି ସେମାନଙ୍କୁ ମନୋଯୋଗପୂର୍ବକ ପର୍ଯ୍ୟାଲୋଚନା କଲେ ଦେଶୀୟ ସାହିତ୍ୟର ଭଙ୍ଗୀ କେତେକ ଅଂଶରେ ପ୍ରକାଶିତ ହେବ, ଏଥିରେ ଅଉ ସନ୍ଦେହ କଣ ? ଦେଶୀୟ ସାହିତ୍ୟର ଉନ୍ନତି କରିବାକୁ ହେଲେ ପୁରାତନ ଓ ଅଧୁନାତନ ଆଚାର, ବ୍ୟବହାର, ରୁଚି, ନୀତି, କଳ୍ପନାଶକ୍ତିର ପରିକ୍ରମ ଜ୍ଞାତ ହେବା ସର୍ବତୋଭାବରେ ଶ୍ରେୟସ୍କର; କାରଣ ତାହା ନ କଲେ ସାହିତ୍ୟର ଇତିହାସ ସର୍ବତୋଭାବରେ ହୃଦୟଙ୍ଗମ କରିବା ଏକାନ୍ତ ଅସାଧ୍ୟ ହୋଇ ଉଠେ । ଅତଏବ ଯେଉଁ ଉପାୟଦ୍ୱାରା ପୁରାତନ ବା ଅଧୁନାତନ ରୁଚି ବା କଳ୍ପନାଶକ୍ତିର ପରିଚାଳନ (ଯତ୍କିଞ୍ଚିତ୍ ହେଉ ପଛକେ) ଜଣାଯିବ, ସେଥିରେ ପରିଶ୍ରମ ଯେ ସାହିତ୍ୟ ପ୍ରତି ବୃଥା ଶ୍ରମ, ଏହା ବା କିପରି ବୋଲିଯିବ ?

କାହାଣୀଗୁଡ଼ିକ ବାଳକବାଳିକାମାନଙ୍କ ମନୋରଞ୍ଜନ କରିବା ଉଦ୍ଦେଶ୍ୟରେ ରଚିତ ବା କଳ୍ପିତ, ଏଥିରେ ମତଦ୍ୱୈଧ ହୋଇ ନ ପାରେ । କିନ୍ତୁ ଏହା ସର୍ବାଗ୍ରେ ସ୍ୱୀକାର କରିବାକୁ ହେବ ଯେ, ବାଳକବାଳିକାମାନେ ଏହାର ଉଦ୍ଭାବକ ନୁହନ୍ତି । ଏହା ପ୍ରାପ୍ତବୟସ୍କ-ମାନଙ୍କର କପୋଳକଳ୍ପିତ, କିନ୍ତୁ ବିଶେଷତଃ ବୃଦ୍ଧାମାନଙ୍କ ମୁଖରୁ ଏ ଗଳ୍ପମାନ ଶୁଣାଯାଏ ଓ ଏହି ବର୍ଷୀୟସୀମାନେ ଏହି କାହାଣୀ-ମାନଙ୍କର ଉଦ୍ଭାବିକା ବୋଲି ଅସ୍ମମାନଙ୍କର ଏକାନ୍ତ ପ୍ରତୀତ ହେଉଅଛି ।

ପରମ୍ପରାକ୍ରମେ ବୁଢ଼ୀମା, ଅଈମା ଓ ଗ୍ରାମର ଅନ୍ୟାନ୍ୟ ବୃଦ୍ଧାମାନେ ସନ୍ଧ୍ୟାସମୟରେ ସମ୍ମିଳିତ ଓ ଏକାନ୍ତଚିତ୍ତରେ ଅବସ୍ଥିତ ବାଳକବାଳିକାମାନଙ୍କ ନିକଟରେ ଗଳ୍ପଚୟ କହି ଆସୁଅଛନ୍ତି । ମଧ୍ୟ ଏହି ଗଳ୍ପମାନଙ୍କର ଉଦ୍ଭାବନ ବିଷୟରେ କଳ୍ପନାଶକ୍ତିର ନିତାନ୍ତ ଅଳ୍ପ ପରିଚାଳନା ହୋଇଅଛି, ଏହା ସମସ୍ତେ ଉପଲବ୍ଧି କରୁଥିବେ । ପରିଶେଷରେ ସ୍ୱଭାବସୁଲଭ ଚପଳ କାର୍ଯ୍ୟମାନଙ୍କରୁ ବାଳକବାଳିକା-ମାନଙ୍କୁ ଭୁଲାଇ ନିଶ୍ଚଳଭାବରେ ବସାଇବା ଏକାନ୍ତ ଅବଶ୍ୟକ ହୋଇ ଉଠେ ଓ ଅନ୍ତତଃ ଅସ୍ମମାନଙ୍କ ଦେଶରେ ଏ କାର୍ଯ୍ୟ ଗୃହର ବୃଦ୍ଧାମାନଙ୍କ ଉପରେ ପଡ଼େ । ସେମାନେ ଏଥିର ଉପାୟ ଉଦ୍ଭାବନ କରିବାକୁ ଯାଇ ନିଜର ସ୍ୱଳ୍ପଶକ୍ତି କଳ୍ପନାପ୍ରସାଦରୁ ଏ କାହାଣୀମାନ ଉଦ୍ଭାବନ କରିଅଛନ୍ତି, ଏହା ଅସ୍ମେମାନେ ସ୍ଥିର କରୁଁ ।

ତାହା ବୋଲି ଯେ ଏହି ଗଳ୍ପମାନଙ୍କରୁ କିଛି ସାରବସ୍ତୁର ଉପଲବ୍ଧି ନ ହେବ, ଏମନ୍ତ ନୁହେ । ବାଲୋପଯୋଗୀ କାହାଣୀ-ମାନଙ୍କରେ କେବଳ ଯେ କଳ୍ପନାଶକ୍ତି ପରିଚାଳିତ ହୋଇଅଛି, ତାହା ନୁହେ । ଏଥିରେ ଆଉ କିଛି ବିଶେଷତ୍ୱ ଅଛି । କାହାଣୀମାନ ଯେପରି ବାଳକବାଳିକାମାନଙ୍କର ଚିତ୍ତାକର୍ଷକ ଓ ସହାନୁଭୂତିବ୍ୟଞ୍ଜକ

ହେବ, ଏଥିପାଇଁ ବାଳକବାଳିକାମାନଙ୍କର ଅତି କ୍ଷୁଦ୍ର କଳ୍ପନାଶକ୍ତିର ବେଗ ସଙ୍ଗେ ଏମାନେ ପରିଧାବିତ ହେବା ଏକାନ୍ତ ଆବଶ୍ୟକ। ଏଥିରେ ଅବଶ୍ୟ କୃତିତ୍ୱ ଅଛି; କାରଣ ବାଳକବାଳିକାମାନଙ୍କ ହୃଦୟର ଓ ବୋଧଶକ୍ତିର ଗମ୍ଭୀରତା ନିରୂପଣ କରି ତଦୁପଯୋଗୀ ଗାଳ୍ପଗଳ୍ପରସ୍ତ ଉଦ୍ଭାବନ କରିବା କୌଶଳସାପେକ୍ଷ । ଅତଏବ ଆମ୍ଭେମାନେ ସିଦ୍ଧାନ୍ତ କଲୁଁ ଯେ, ଏପରି ଗଳ୍ପମାନ ଯେଉଁମାନଙ୍କ କପୋଳକଳ୍ପିତ, ସେମାନେ ବିଚକ୍ଷଣ—ଅତଏବ ଧନ୍ୟ ।

ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତାର ବୃଦ୍ଧି ସଙ୍ଗେ ସଙ୍ଗେ ଆମ୍ଭମାନଙ୍କ ଦେଶପ୍ରଚଳିତ କାହାଣୀମାନ ପ୍ରକାଶିତ କିମ୍ବା ଲିପିବଦ୍ଧ ହୋଇ ନ ରହିଲେ ଶୀଘ୍ର ଲୋପ ପାଇଯିବ, ଏପରି ଭୟ ହୁଏ । କାରଣ କ୍ରମଶଃ ପାଶ୍ଚାତ୍ୟ କାହାଣୀମାନ ଏ ଦେଶର କାହାଣୀମାନଙ୍କ ସ୍ଥାନ ଅଧିକାର କରିବ, ପାଶ୍ଚାତ୍ୟ ସଭ୍ୟତାର ବୃଦ୍ଧି ସଙ୍ଗେ ସଙ୍ଗେ ଲୋକ-ମାନଙ୍କର ଓ ବାଳକବାଳିକାମାନଙ୍କର ରୁଚି କ୍ରମଶଃ ପ୍ରାଚ୍ୟ ରୁଚିଠାରୁ ବିଭିନ୍ନ ହୋଇଯିବ, କାରଣ ବାଳକବାଳିକାମାନଙ୍କ ରୁଚି ଦେଶପ୍ରଚଳିତ ରୁଚିର କେତେକ ଅଂଶରେ ପରିମାପକ ଅଟେ । ଅତଏବ ଦେଶପ୍ରଚଳିତ କାହାଣୀମାନ କିପରି ବିନଷ୍ଟ ନ ହୋଇ ଲିପିବଦ୍ଧ ହୋଇ ସାହିତ୍ୟ-ଭଣ୍ଡାରରେ ସୁରକ୍ଷିତ ହେବ, ଏହା ସାହିତ୍ୟଯୋଦ୍ଧାମାନଙ୍କର ଗୋଟିଏ ପ୍ରଧାନ ଉଦ୍ଦେଶ୍ୟ ମଧ୍ୟରେ ପରିଗଣିତ ହେବା ଉଚିତ ।

ମୋହର ସ୍ୱୀୟ ଅନୁଭବରୁ ମୁଁ ବୁଝି ପାରିଅଛି ଯେ, ମୁଁ ବାଲ୍ୟକାଳରେ, ଯେତେ କାହାଣୀ ଶୁଣିଥିଲି ଓ ସ୍ମରଣ ରଖିଥିଲି, ବର୍ତ୍ତମାନ ମୋହର ଅଳ୍ପବୟସ୍କ ବନ୍ଧୁମାନେ ସେଥିର ଅର୍ଦ୍ଧେକ ସୁଦ୍ଧା ଜାଣି ନାହାନ୍ତି ଓ ଯେଉଁମାନଙ୍କଠାରୁ ମୁଁ ଏମାନ ଶୁଣିଥିଲି, ସେମାନଙ୍କୁ କେତେକ ଅର୍ଦ୍ଧବିସ୍ମୃତ କାହାଣୀମାନଙ୍କ ବିଷୟ ଜିଜ୍ଞାସା

ଭଲେ, ସେମାନେ ଅନଭ୍ୟାସବଶତଃ ଅନେକ କାହାଣୀ ଅଂଶିକ ଭୁଲି ଯାଇଥିବାର ପ୍ରକାଶ କରନ୍ତି । ଏଥିରୁ କଣ ସ୍ପଷ୍ଟ ପ୍ରତୀୟମାନ ହେବ ନାହିଁ ଯେ, ମୋର ବାଲ୍ୟକାଳର ବାଳକମାନଙ୍କ ଅପେକ୍ଷା ଅଧୁନାତନ ବାଳକମାନଙ୍କର କାହାଣୀ ଶୁଣିବାର ତୃଷ୍ଣା କ୍ଷୀଣତର ହୋଇଅଛି ? ମୁଁ ବାଲ୍ୟକାଳରେ ମୋର ପିତାମହୀ, ପିତାମହସ୍ୱସା ଓ ଜେଠେଇଙ୍କ-ଠାରୁ ଅନେକ କାହାଣୀ ଶୁଣିଥିଲି । ଅହା ! ସେ ଦିନ ମନେ ପଡ଼ିଲେ ଅନ୍ତରତମ ପ୍ରଦେଶ ଆନନ୍ଦରେ ନାଚି ଉଠେ । ସନ୍ଧ୍ୟା ହେଲେ କେଡ଼େ ଅଗ୍ରହସହକାରେ ‘ସାଇ’ର ବାଳକବାଳିକାମାନଙ୍କ ସମଭିବ୍ୟାହାରରେ ବୁଢ଼ୀ ମା ଓ ଜେଠେଇଙ୍କର ଆଗମନ ସତୃଷ୍ଣ-ନୟନରେ ପ୍ରତୀକ୍ଷା କରିଥାଉଁ । ସେମାନଙ୍କର ନିକଟବର୍ତ୍ତୀ ସ୍ଥାନରେ ବସିବାକୁ ସୁବିଧା ମିଳିଲେ ସେ ଦିନ ନିଜକୁ କୃତକୃତ୍ୟ ମଣୁଥାଉଁ । ଗୋଟିଏ ଗୋଟିଏ ଭୂତ ଓ ରାକ୍ଷସୀର ଗଳ୍ପ ଶୁଣି ଅମ୍ଭେମାନେ ଏତେ-ଦୂର ଭୟବିହ୍ୱଳ ହେଉଁ ଯେ, ଦିନେ ଦିନେ ରାତିରେ ନିଦ୍ରାସୁଖରୁ ବଞ୍ଚିତ ହେଉଁ ଓ କଳ୍ପନାଦେବୀ ଅମ୍ଭମାନଙ୍କୁ ରାତିରେ ଏକାକୀ ଦେଖି ତାଙ୍କର ଅଭିନବ ଶିଳ୍ପନୈପୁଣ୍ୟ ପ୍ରକାଶ କରନ୍ତି ।

ଆଉ ଗୋଟିଏ କଥା ଏଠାରେ ଅବତାରଣା କରିବା ଆବଶ୍ୟକ—ଅମ୍ଭମାନଙ୍କ ଦେଶରେ ଓ ବିଶେଷତଃ ସ୍ତ୍ରୀମାନଙ୍କ ମଧ୍ୟରେ ରୁଚି ନିତାନ୍ତ ପରିମାର୍ଜିତ ନୁହେ । ଏପରି ସ୍ଥଳରେ କାହାଣୀମାନ ଯେଉଁରୂପରେ ବୃଦ୍ଧାମାନଙ୍କ ମୁଖରୁ ଶୁଣାଯାଏ, ସେସମାନ ଅବିକଳ ଲିପିବଦ୍ଧ କଲେ ତାହା ପରିମାର୍ଜିତ ରୁଚିର ବିରୁଦ୍ଧ ହୋଇ ଉଠିବାର ସମ୍ଭବ; କିନ୍ତୁ ଉକ୍ତ ଗଳ୍ପମାନ ପରିମାର୍ଜିତ କରିବାକୁ ଗଲେ କାହାଣୀମାନଙ୍କର ଅକୃତ୍ରିମ ମନୋହାରିତ୍ୱ ଓ ସରସତାରେ ବାଧା ପଡ଼େ । ଅତଏବ ଏହା ଗୋଟିଏ ଗୁରୁତର ପ୍ରଶ୍ନ । ଏହାର ମୀମାଂସା ସତନ୍ତ୍ର ଅନୁଶୀଳନସାପେକ୍ଷ । ବର୍ତ୍ତମାନ ଦେଖାଯାଉ,

ଆମ୍ଭେମାନେ ଏ ଜଟିଳ ବିଷୟ ମୀମାଂସା କରିବାରେ କେତେଦୂର
ସମର୍ଥ ହେବୁଁ ।

ପୂର୍ବେ ଆମ୍ଭେମାନେ ଦେଖେଇଅଛୁଁ ଯେ, ଦେଶପ୍ରଚଳିତ କାହାଣୀ-
ମାନ ଦେଶପ୍ରଚଳିତ ରୁଚିର ପରିମାପକ ଅଟେ ଓ ଏମାନ ପ୍ରକାଶ
କରିବାଦ୍ୱାରା ଦେଶପ୍ରଚଳିତ ରୁଚିର ମାର୍ଗ ସହଜରେ ବୋଧଗମ୍ୟ
ହେଲେ ଦେଶୀୟ ସାହିତ୍ୟର କିୟଦଂଶରେ ଉପକାର ସାଧିତ ହେବ ।
କିନ୍ତୁ ବର୍ତ୍ତମାନ ଦେଖାଗଲା ଯେ, ଆମ୍ଭମାନଙ୍କ ଦେଶପ୍ରଚଳିତ କାହାଣୀ-
ମାନ ପ୍ରକାଶ କରିବା ପୂର୍ବରୁ ସେମାନଙ୍କୁ ମାର୍ଜିତ କରିବା ଏକାନ୍ତ
ଆବଶ୍ୟକ; କିନ୍ତୁ ମାର୍ଜିତ କରିବାକୁ ଗଲେ ଆମ୍ଭମାନଙ୍କର ପ୍ରଥମ
ଉଦ୍ଦେଶ୍ୟ ନଷ୍ଟପ୍ରାୟ ହୁଏ । ଏପରି ସ୍ଥଳରେ ଆମ୍ଭମାନଙ୍କର
କର୍ତ୍ତବ୍ୟ ଯେ ନିତାନ୍ତ ଅପରିମାର୍ଜିତ ରୁଚିସିଦ୍ଧ ଅଂଶମାନ ପରିବର୍ତ୍ତନ
କରି ଗଳ୍ପମାନଙ୍କର ଗ୍ରାମ୍ୟ ମଧୁରତା ରକ୍ଷା କରି କାହାଣୀମାନଙ୍କ ମୁଖ୍ୟ
ଲକ୍ଷକୁ ପୂର୍ବ ପରି ରଖି ଉକ୍ତ କାହାଣୀମାନଙ୍କୁ ପ୍ରକାଶ କରିବା ।
କିନ୍ତୁ ଏଥିରେ ବିଶେଷ କୃତିତ୍ୱ ଆବଶ୍ୟକ । କେଉଁ ଅଂଶ ପରିତ୍ୟାଗ
କରିବାକୁ ହେବ, କେଉଁ ଅଂଶ ମାର୍ଜିତ କରିବାକୁ ହେବ ଓ କେଉଁ
ଅଂଶ ପରିବର୍ତ୍ତିତ କରାଯିବ, ଏହା ଲେଖକବିଶେଷଙ୍କର ରୁଚି, ପାଣ୍ଡିତ୍ୟ
ଓ ଶକ୍ତିର ପରିମାଣ ଉପରେ ନିର୍ଭର କରେ । ଏ ବିଷୟରେ ସୀମା
ନିରୂପଣ କରିବା ଆମ୍ଭମାନଙ୍କର ସାଧ୍ୟାୟତ୍ତ ବୋଲି ମନେ ହୁଏ
ନାହିଁ । ତେବେ ଏତିକି ମାତ୍ର ବୋଲାଯାଇ ପାରେ ଯେ, ଭିନ୍ନ ଭିନ୍ନ
ଲେଖକ ପରିଶ୍ରମ କରି ଏମାନ ସଂଗ୍ରହ କଲେ ସର୍ବସାଧାରଣ
ଲେଖକମାନଙ୍କର ପଟୁତା ଓ ଅପଟୁତା ନିସ୍ପତ୍ତି କରିଦେବେ ଓ
ସର୍ବସାଧାରଣଙ୍କଦ୍ୱାରା ସମାଦୃତ ସର୍ବୋଚ୍ଚ ଲେଖକଙ୍କୁ ଏ ବିଷୟରେ
ଅନୁକରଣ କରିବାକୁ ହେବ ।

ମୁଁ କେତେକ କାହାଣୀ ସଂଗ୍ରହ କରିଥିଲି । ପରେ ଦେଖିଲି
ଯେ ପରିମାର୍ଜିତ ନ ହେଲେ ଉକ୍ତ କାହାଣୀମାନ ପ୍ରକାଶଯୋଗ୍ୟ

ହେବ ନାହିଁ । ଚେଷ୍ଟା କରି ଦେଖିଲି ଯେ, ଗଳ୍ପର ଗ୍ରାମ୍ୟ ମାଧୁର୍ଯ୍ୟକୁ ଅକ୍ଷୁଣ୍ଣଭାବରେ ରଖିବାକୁ ଗଲେ ଗଳ୍ପନିହିତ ରୁଚି ପରିବର୍ତ୍ତନ କରିବାର କ୍ଷମତା ମୋର ନାହିଁ କିମ୍ବା ରୁଚିପରିବର୍ତ୍ତନ କଲେ ଗଳ୍ପର ମଧୁରିମା ରହି ପାରୁ ନାହିଁ । ଏପରି ଦ୍ୱିଧା ଘଟନାସ୍ଥଳରେ ହତାଶ ନ ହୋଇ ଚେଷ୍ଟା କରିବା ଆବଶ୍ୟକ । ଯାହା ମୋହର ଚେଷ୍ଟା ସାଧନ କରି ପାରି ନାହିଁ, ତାହା ସମୟକ୍ରମେ ସାଧିତ ହୋଇ ପାରେ ଓ ଯାହା ମୋହର 'କାଠସ୍ୟ କାଠ' ବୁଦ୍ଧିର ଅସାଧ୍ୟ, ତାହା ଅନ୍ୟ କୌଣସି ବ୍ୟକ୍ତିଙ୍କର ସହଜସାଧ୍ୟ । ଏହି କ୍ଷୁଦ୍ର ରଚନାଟି ଲେଖିବାଦ୍ୱାରା ମୁଁ ଯଦି ଜଣେ ସୁଦ୍ଧା ସାହିତ୍ୟସେବକଙ୍କ ହୃଦୟରେ କାହାଣୀଲିଖନଲିପ୍‌ସା ଜାଗ୍ରତ କରି ପାରିବି, ତେବେ ମୋର ଉଦ୍ଦେଶ୍ୟ କେତେକ ଅଂଶରେ ସାଧିତ ହୋଇଅଛି ବୋଲି ନିଶ୍ଚିନ୍ତ ହେବି । ପ୍ରକାଶ ଥାଉ କି, ବିଭିନ୍ନ ଅଞ୍ଚଳରେ ପ୍ରଚଳିତ ଭାଷାଗତ ବୈଷମ୍ୟ ହେତୁରୁ କଷ୍ଟକର କାହାଣୀମାନଙ୍କୁ ସର୍ବବାଦି-ସମ୍ମତ ଭାଷାରେ ଲେଖିବା କଷ୍ଟକର ହୋଇ ପଡେ । ଏଥି ପ୍ରତି ଲେଖକମାନଙ୍କ ଦୃଷ୍ଟି ରହିବା ଏକାନ୍ତ ଆବଶ୍ୟକ ।

ପରିଶେଷରେ ବକ୍ତବ୍ୟ ଏହି ଯେ ମୁଁ ଏ ପ୍ରବନ୍ଧ ଲେଖିବାପରେ ସ୍ଥିର କଲି ଯେ ଉତ୍କଳଦେଶପ୍ରଚଳିତ କାହାଣୀମାନ ଦୁଇ ଭାଗରେ ବିଭକ୍ତ ହେବାର ଯୋଗ୍ୟ । ପ୍ରଥମ ବାଳୋପଯୋଗୀ କାହାଣୀ, ଦ୍ୱିତୀୟ ବୃଦ୍ଧୋପଯୋଗୀ କାହାଣୀ । ଦ୍ୱିତୀୟ ପ୍ରକାର କାହାଣୀରେ ସାରବତ୍ତାର ମାତ୍ରା ସୁପରିଷ୍ଫୁଟଭାବରେ ବିଦ୍ୟମାନ । 'ଗୁରୁ ମହାଜନ-ପୁଅକଥା' ଦ୍ୱିତୀୟ ଶ୍ରେଣୀର । କୌଣସି ସାରବାନ୍ ଉଦ୍ଦେଶ୍ୟ ଦେଇ ଏ ଶ୍ରେଣୀର କାହାଣୀମାନ କଳ୍ପିତ । ସଂକ୍ଷେପରେ କହିବାକୁ ଗଲେ ସବୁ କାହାଣୀର ମୂଲ୍ୟ ଅଛି ।

ଗୋପାଳଚନ୍ଦ୍ର ପ୍ରହରାଜ ।

# ଦଶମ ସଂସ୍କରଣର ଭୂମିକା

ସ୍ୱର୍ଗୀୟ ସୁଲେଖକ ଗୋପାଳଚନ୍ଦ୍ର ପ୍ରହରାଜଙ୍କ "ଉତ୍କଳ କାହାଣୀ" ଉତ୍କଳରେ ସର୍ବତ୍ର ପରିଚିତ ଓ ସମାଦୃତ; ତାହାର କାରଣ, ଏହି ପୁସ୍ତକର ଭାଷା ଓ କଥନଶୈଳୀ, ସରଳ ସହଜ ଗ୍ରାମ୍ୟ ଭାଷାରେ ଗଳ୍ପ କହି ସାଧାରଣଙ୍କର ମନୋରଞ୍ଜନ କରିବା ବିଷୟରେ ଗୋପାଳବାବୁ ଏ ଦେଶରେ ଅଦ୍ୱିତୀୟ ଥିଲେ ବୋଲି କହିଲେ ଚଳେ । ଓଡ଼ିଆ ସାହିତ୍ୟକ୍ଷେତ୍ରରେ ତାଙ୍କର ଭାଷା ଓ ଲେଖନଶୈଳୀକୁ ଏ ପର୍ଯ୍ୟନ୍ତ ଯଥାଯଥ ଭାବରେ ଅନୁକରଣ କରାଯାଇ ପାରି ନାହିଁ ବୋଲି ଆମ୍ଭର ବିଶ୍ୱାସ । ଗୋପାଳବାବୁଙ୍କର ଅସାଧାରଣ ଲେଖନଭଙ୍ଗୀରେ ପ୍ରାଣବନ୍ତ ଏହି ପୁସ୍ତକଖଣ୍ଡି କି ପୁରୁଷ, କି ସ୍ତ୍ରୀ, କି ବାଳକବାଳିକା ସମସ୍ତଙ୍କର ଅତି ଆଦର ଓ ଉପଭୋଗର ବିଷୟ ହୋଇ ଗଳ୍ପ-ସାହିତ୍ୟରେ ତାର ଉଚ୍ଚତମ ସ୍ଥାନ ଏ ପର୍ଯ୍ୟନ୍ତ ଦୃଢ଼ଭାବରେ ରକ୍ଷି ଆସିଅଛି ।

ଏହି କାହାଣୀ ପୁସ୍ତକଟି ଯେତେବେଳେ ପ୍ରଥମେ ପ୍ରକାଶିତ ହେଲା, ସେତେବେଳେ ପାଠକପାଠିକାମାନଙ୍କର ଆଗ୍ରହର ଆଧିକ୍ୟ ହେତୁରୁ ପ୍ରକାଶିତ ଏବଂ ଦ୍ୱିତୀୟ ସଂସ୍କରଣମାନଙ୍କର ସମସ୍ତ ପୁସ୍ତକ ଅଳ୍ପ ସମୟ ମଧ୍ୟରେ ନିଃଶେଷ ହୋଇଯାଇଥିଲା । ନବମ ସଂସ୍କରଣ ପରେ ବହୁବର୍ଷ ଅତୀତ ହୋଇଯାଇ ଥିଲେହେଁ କାଗଜ ଅଭାବ ଏବଂ ଅନ୍ୟାନ୍ୟ କେତେକ ଅସୁବିଧା ହେତୁ ଏହାର ଆଉ ଅନ୍ୟ ସଂସ୍କରଣ ପ୍ରକାଶ ହୋଇ ନ ଥିବାରୁ, ସାଧାରଣ ପାଠକପାଠିକା ବଡ଼ ଅଭାବ ଅନୁଭବ କରୁଥିଲେ । ଆମ୍ଭେମାନେ ମଧ୍ୟ ଅନେକ ସମୟରେ ଭିନ୍ନ ଭିନ୍ନ ଲୋକଙ୍କଠାରୁ ପୁସ୍ତକଟିର ଉପାଦେୟତା ଏବଂ ତତ୍ପ୍ରତି ସାଧାରଣଙ୍କର ଆଗ୍ରହ ବିଷୟରେ ଶୁଣିବାକୁ ପାଉଥିଲୁ ।

ତେଣୁ ପାଠକସାଧାରଣଙ୍କର ସନିର୍ବନ୍ଧ ଅନୁରୋଧ ହେତୁରୁ ଆମ୍ଭେମାନେ ଏହି ପୁସ୍ତକଟିର ନୂତନ ସଂସ୍କରଣ ପ୍ରକାଶ କଲୁଁ । ବିଶ୍ୱାସ କରୁଁ ଏହି କାର୍ଯ୍ୟଦ୍ୱାରା ଆମ୍ଭେମାନେ ଉତ୍କଳସାହିତ୍ୟକ୍ଷେତ୍ରରେ ଗୋଟିଏ ଦୀର୍ଘଅନୁଭୂତ ଅଭାବ ପୂରଣ କରିବା ସଙ୍ଗେ ସଙ୍ଗେ ସହୃଦୟ ପାଠକପାଠିକାମାନଙ୍କର ଆଗ୍ରହର ସମ୍ୟକ୍ ସମାଧାନ କରିପାରିଅଛୁଁ । ଦେଶର ସାହିତ୍ୟିକ ଓ ପାଠକଶ୍ରେଣୀ ଯଦି ଏହାକୁ ଏହି ସହାନୁଭୂତିମୂଳକ ଦୃଷ୍ଟିରୁ ଦେଖନ୍ତି, ତାହାହେଲେ ଆମ୍ଭର ଶ୍ରମ ସାର୍ଥକ ହେଲା ବୋଲି ମନେ କରିବୁଁ । ଇତି ।

କଟକ<br>
ତା ୭-୫-୪୨ } ରମଳା କର

# ସୂଚୀପତ୍ର

ବିଷୟ — ପୃଷ୍ଠା



ଚକୁଳିଆପଣ୍ଡା କଥା

( ସୁନାନାକୀ ଝିଅ )

କଥାଟିଏ କହୁଁ, କଥାଟିଏ କହୁଁ ।
କିସ କଥା ? ବେଙ୍ଗ ମଥା ।
କି ବେଙ୍ଗ ? ଠୁଷ ବେଙ୍ଗ ।
କି ଠୁଷ ? ବ୍ରାହ୍ମଣମଷ ।
କି ବ୍ରାହ୍ମଣ ? ଶୁଦ୍ଧ ବ୍ରାହ୍ମଣ ।
କି ଶୁଦ୍ଧ ? ପିଠାମଧ୍ୟ ।
କି ପିଠା ? ଭାଲ ଗଇଁଠା ।
କି ଢାଲ ? ସୋରିଷମାଳ ।
କି ସୋରିଷ ? ଅଣସୋରିଷ ।
କି ଅଣ ? କିଅବଣ ।
କି କଅ ? ବଜାଭଅ ।

କି ରଜା ? ଖଣ୍ଡିଖଜା ।
କି ଖଣ୍ଡି ? ମିରଗ ଲଣ୍ଡି ।
କି ମିରଗ ? ଝାଡ଼ ମିରଗ ।
କି ଝାଡ଼ ? ଭଣ୍ଡା ବାଡ଼ ।
କି ଭଣ୍ଡା ? କାନଭୋଳି ଭଣ୍ଡା ।
ଯହିଁରେ ଲାଗିବ ଲଠାପଠା ।

ଏ କଥାଟି ନା ଚକୁଳିଆପଣ୍ଡା କଥା । ଏକ ଗାଁରେ ଗୋଟିଏ ଚକୁଳିଆପଣ୍ଡା ଥାଏ, ତାର ସାତ ଝିଅ । ଦିନେ ପଣ୍ଡା ପଣ୍ଡିଆଣୀକି କହିଲା, ପଣ୍ଡିଆଣୀ ଲୋ, ପିଠା କଲୁ ନାହିଁ ? ପଣ୍ଡା ସକାଳୁ ଉଠି ଭିକ ମାଗିବାକୁ ଗଲା । ପଣ୍ଡିଆଣୀ ଗାଁରୁ ଯା ଘରୁ ଶୀଳ, ତା ଘରୁ ତେଲଡଣୀ, ତାହା ଘରୁ ପିଠାଖଣ୍ଡିକା ମାଗି ଆଣି ପିଠା କଲା । ପିଠା ଭର ସାରିଲାଣି, ତାକୁ 'ପୋଖସ' ମାଡ଼ିଲା । ତେଣୁ ଆସି ଦେଖେ ଯେ ସାତ ଝିଅ ସାତଟିଯାକ ପିଠା ଖାଇ ସାରିଲେଣି । ପଣ୍ଡା ଆସି ଶୁଣିଲେ ଆଉ ସଂସାର ରଖିବ ନାହିଁ । ଝିଅଙ୍କୁ ଠାଙ୍କେ ଲେଖାଏଁ ଛେଚିଲା, ପଛକୁ ପିଠାଖଡ଼ିକା ତଳେଇ ସମସ୍ତଙ୍କ ପିଠିରେ ଚାଉଁ ଦେଲା । ଦୁଃଖୀ ଘର, ଆଉ କଣ ଗୁଜୁରା, ଦାର ଅଛୁ ଯେ ଆଉ ଥରେ ପିଠା କରି ଥୋଇ ଦେବ ? ବହେ କୋଡ଼ି କରୁଡ଼ି ହେଲା, ପଛକୁ ଆପେ ବସି କାନ୍ଦୁଥାଏ । ସନ୍ଧ୍ୟାବେଳେ ପଣ୍ଡା ଘରକୁ ଆଇଲା, ପଣ୍ଡିଆଣୀ ଏସବୁ କଥା କହିଲା । ପଣ୍ଡା ପଣ୍ଡିଆଣୀ ବିଚାରିଲେ, ଝିଅଙ୍କୁ ନେଇ ବଣରେ ଛାଡ଼ି ଦେଇ ଆଇଲେ କାଳ ଯିବ । ଯୁଆ ବିଚାର ଦିହେଁଯାକ ରାତରେ ଶୋଇଲେ । ତହିଁ ଆର ଦିନ ସକାଳୁ ପଣ୍ଡିଆଣୀ ଗୋଟିଏ ପୁଡ଼ାରେ ଭାତ, ଆଉ ପୁଡ଼ାକେ କପାମଞ୍ଜି ଗୁଡ଼ାଏ ସଜାଡ଼ି ଦେଲା । ପଣ୍ଡା ଝିଅଙ୍କୁ ମାମୁଘରକୁ ନେଇ

ଯିବା ବାହାନାରେ ବାଟରେ ଖାଇବ ବୋଲି କହି ଘରଟିଯାକ ପୁଡ଼ା ପଡ଼ିଲ କଲ । ସାତ ଝିଅଙ୍କୁ ଭଣ୍ଡେଇ କରି ଘରୁ ନେଇ ଯାଉଁ ଯାଉଁ ଅଗ୍ନାଗ୍ନି ବନସ୍ତ ପଡ଼ିଲା । କୁଆର ଥଣ୍ଡ ନାହିଁ, ଢ ଚଢ଼େଇର ବେଣ୍ଟ ନାହିଁ । ଝିଅଙ୍କୁ ଭୋକ କଲା । ତାଙ୍କୁ ଗଛମୂଳେ ବସାଇ ଦେଇ ମଦାଏ ପାଣି ଅଣିବ ବୋଲି ଗଲ । ଏଣେ ଗଲବେଳେ ଭାତ ପୁଡ଼ାଟି ଅପେ ନେଇ ଗଲ । କପାମଞ୍ଜି ପୁଡ଼ାଟି ଝିଅଙ୍କ ପାଖରେ ଛାଡ଼ି ଦେଇ ଗଲା । ବୁହୁଁ ବୁହୁଁ ଅସି ଛୁଇ ଲେଉଟିଲଣି, ଏତେବେଳଯାଏ ବାପା କଆଁ ନ ଅଇଲେ ? ବାପକୁ କେତେ ଡାକିଲେ, କେହି ଶୁଣିଲା ନାହିଁ । କେତେ କାନ୍ଦିଲେ, ତେବେ ସୁଦ୍ଧା ବାପ 'ଓଁ' କଲ ନାହିଁ । ଭୋକରେ କରଡ଼ି ଜଳିଲଣି । ପୁଡ଼ା ଫିଟେଇ ଦେଖନ୍ତି, ତା ଭିତରେ କପାମଞ୍ଜି ଗୁଣ୍ଡାଏ । କାଲି ପିଠାଖିଆ କଥା ମନେ ପଡ଼ିଲା । ପଛକୁ ଜାଣି ପାରିଲେ, ବାପା ତାଙ୍କୁ ଭଣ୍ଡେଇ ବଣରେ ଛାଡ଼ି ଦେଇ ଗଲ, ଆଉ ଅସିବେ ନାହିଁ ।

ବେଳ ବୁଡ଼ିଲ, ମଝିରେ ମଝିରେ କେତେବେଳେ ବାଲୁଅଟାଏ, କେତେବେଳେ ହେଟାଟାଏ ବୋବାଳି ଛାଡୁଥାନ୍ତି । ପାଖରେ କେହି ନାହିଁ । ପିଲା ଲୋକ, ଏକୁଟିଆ ତାଙ୍କୁ ବଡ଼ ଡର ମାଡ଼ିଲା । ଅନ୍ଧାର ମାଡ଼ ଅସୁଛି । ବଣରେ ଭୂତ ବ୍ରହ୍ମ ରାକ୍ଷସ ଡାହାଣୀ ଟବଗୁଣୀ ବହୁତ । ପଛକୁ ପାଟି କରି କାନ୍ଦି କାନ୍ଦି ଥକି ଗଲେଣି । ଗୋଟିଏ ଗଛ ଉପରେ ସାତ ଭଉଣୀଯାକ ଚଢ଼ିଲେ । ଡାଳରେ ବସି ତୁନି ହୋଇ ଆଖିରୁ ଟୋପାଏ ଲେଖାଏଁ ଲୁହ ଗଡ଼ଉଥାନ୍ତି । ରାତରେ ସେଠେଇ କିଏ ଅଛି ଯେ, ପାଟି କରି କାନ୍ଦିଲେ କାନ୍ଦ ଶୁଣି ଦଉଡ଼ି ଅସିବ ?

ସେ ଦେଶର ରଜା ଯାଇଥିଲେ ପାରିଧିକି । ଲେଉଟି ଅସୁ ଅସୁ ବେଳ ବୁଡ଼ିଗଲା । ଘୋଡ଼ାରେ ଚଢ଼ିଛନ୍ତି, ସେ ଗଛ ତଳେ

ଯାଉଁ ଯାଉଁ ଶ୍ରୀଅଙ୍ଗରେ ଟୋପାଏ ପାଣି ଗଛରୁ ପଡ଼ିଲା । ରଜାଙ୍କୁ କେଉଁ କଥା ଅପୂର୍ବ ? ସାଙ୍ଗରେ ପାତ୍ର ମନ୍ତ୍ରୀ ସାଧବ କଟୁଆଳ ଗଉଡ଼ ଭଣ୍ଡାର ଛତରା ନିଯୋଗ ସମସ୍ତେ ଅଛନ୍ତି । ସେତିକିବେଳେ ଦେଖୁଣିଆଙ୍କୁ ଦେଖେଇଲେ, ଗୁଣିଆଙ୍କୁ ଚଖେଇଲେ । ଠିକ୍ ହେଲା, ସେ ଟୋପାକ ପାଣି ନୁହେଁ, ମଣିଷ ଆଖି ଲୁହ । ଗଛ ଉପରକୁ ଚାହିଁଲେ, ସାତୋଟି ଝିଅ ବସି କାନ୍ଦୁଛନ୍ତି । ରଜା ଆଜ୍ଞା ଦେଲେ, ସାତ ଭଉଣୀଯାକ ଗଛରୁ ଓହ୍ଲେଇଲେ ।

ସେଥିରୁ ରଜା କହିଲେ, କିଏ କ'ଣ ପାଇଁକି କରିବ କହ, ଆମେ ତୁମକୁ ନଅରରେ ନେଇ ରଖେଇବା ।

ବଡ଼ ଭଉଣୀ କହିଲା—ମୁଁ ଗୁଣ୍ଡଳ ବାଉଁଶିଆଏ ଭାତ ରାନ୍ଧି ଦେଲେ ନଅର ଘର ଚତୁରଙ୍ଗ ବଳ ଖାଇଲେ ସରିବ ନାହିଁ ।

ତା ତଳକି କହିଲା—ମୁଁ ପିଠଉ ପିତଳକେ ପିଠା କଲେ ନଅର ଘର ଚତୁରଙ୍ଗ ବଳ ଖାଇଲେ ସରିବ ନାହିଁ ।

ତହୁଁ ଆରକ କହିଲା—ମୁଁ ହଳଦ କାଠୁଆଏ ବାଟି ଦେଲେ ନଅର ଘର ଚତୁରଙ୍ଗ ବଳ ଲଗେଇଲେ ସରିବ ନାହିଁ ।

ଆଉ ଜଣେ କହିଲା—ମୁଁ ହାଣ୍ଡିଏ ତିଅଣ ରାନ୍ଧିଲେ ସରିବ ନାହିଁ ।

ଇମିତ ଛ ଭଉଣୀ ଛ କଥା କହିଲେ । ପଛକୁ ସାନ ଭଉଣୀଟି କହିଲା, ମୁଁ ବାହା ହେଲେ ଉତ୍ତମ ସୁନ୍ଦର ସାତ ପୁଅ, ସୁନାନାକୀ ଝିଅ ଜନମ କରିବି ।

ରଜା ସବୁ ଭଉଣୀଙ୍କୁ ସାଙ୍ଗରେ ନଅରକୁ ନେଲେ । ପେଙ୍ଗା କହିବା ଅଉଭପସରେ ଛ ଭଉଣୀଯାକଙ୍କୁ ରଖି ସଭା ସାନଟିକୁ ପାଟରାଣୀ କଲେ ।

ଦିନାକେତେ ଗଲାରୁ ରାଣୀଙ୍କର ମାସ ଗଡ଼ିଲା । ରଜା ସବୁବେଳେ ଦରବାର କରୁଥାନ୍ତି । ରାଣୀଙ୍କ କଥା 'ଠାକୁ ନ ଉଠେ ବର, ଧରାଧର କର ବାହା କର'; ରାଣୀ ଯେଉଁଠି ବସନ୍ତି, ଆଉ ଉଠି ପାରନ୍ତି ନାହିଁ । ରଜାଙ୍କୁ ଦେଖିଲେ କେତେ ଉଲ୍ଲାସ ଲାଗେ । ରାଣୀଙ୍କର ଖାଇ ମନ ହେଲା—କେତେବେଳେ ଶୁଖୁଆ ରାଇ ଟିକିଏ, କେତେବେଳେ ମୂଳାକାଞ୍ଜି ଟିକିଏ, କେତେବେଳେ ଦୁଧଛେନା ଟିକିଏ, ଯାହା ଯେତେବେଳେ ମନ ହୁଏ, ରଜା ଘଡ଼ିକେ ସବୁ କଥା ଆଣି ଦିଅନ୍ତି । ରଜା ଘର, ତାଙ୍କୁ କି କଥା ଅପୂର୍ବ ? ସ୍ୱର୍ଗରୁ ତରା ଦେଲେ ଆସିବେ । ଗଡ଼ୁଁ ଗଡ଼ୁଁ ଦଶ ମାସ ପୂରିଲା । ରଜା ତ ସବୁବେଳେ ଉଆସରେ ରହି ପାରିବେ ନାହିଁ, ଦରବାରକୁ ଯିବେ, ପାତ୍ର ମନ୍ତ୍ରୀ କଟୁଆଳ ସାଧବଙ୍କ ସାଙ୍ଗେ ମାମଲା ବୁଝିବେ । ସେ ଏବେ କାହିଁ ରାଣୀଙ୍କ ପାଖରେ ସବୁବେଳେ ବସି ରହିବେ ? ପଛକୁ ରଜା ଦରବାରକୁ ଗଲାବେଳେ ଖଣ୍ଡିଏ ବଇଁଶୀ ରାଣୀଙ୍କୁ ଦେଇ ଯାନ୍ତି । ରାଣୀ ଯେତେବେଳେ ଦୁଃଖ ପାଇବେ, ଏ ବଇଁଶୀଟିକୁ ବଜେଇଦେଲେ ରଜା ତାଙ୍କ ପାଖକୁ ଆସିବେ । ରଜା ଯା କହି ଦରବାରକୁ ଗଲେ । ରାଣୀ କହିଲେ, କାଲେ ଏ କଥା ମିଛ ହୋଇଥିବ ! ଯା ବାହୁର ରଜା ଦରବାରକୁ ଯାଇଛନ୍ତି, ରାଣୀ ଦିନେ ମିଛରେ ମିଛରେ ବଇଁଶୀଟି ବଜେଇ ଦେଲେ । ରଜା ଯିମିତି ବଇଁଶୀ ବାଜିଲା ଶୁଣିଲେ, ସେହିକ୍ଷଣି ଉଆସକୁ ବାହାରି ଆସିଲେ । ରାଣୀଙ୍କି ଦେଖିଲେ, ଦୁଃଖ ଫ ଖ କିଛି ନାହିଁ, ଥିର ହୋଇ ବସିଛନ୍ତି । ରାଣୀଙ୍କି ପଚାରିଲେ,

କ ହୋ ! କାହିଁକି ମତେ ଉଡ଼େଇଲ ? ତୁମେ ତ ଏଇଲାଗେ ଦୁଃଖ ପାଇ ନାହିଁ ! ରାଣୀ କହିଲେ, ବଇଁଶୀ ବଜେଇଲେ ତୁମେ ସତରେ ଆସିବ କି ନାହିଁ, ଏ କଥା ବୁଝିବା ପାଇଁ ବଇଁଶୀ ବଜେଇ ଦେଲି। ଏବେ ଜାଣିଲି ତୁମ କଥା ସତ।

ରଜା ଯା' ଶୁଣି ଫେରି ଗଲେ। ଏ କଥା ମନେ ଥାଏ। ଦିନେ ସତକୁ ସତ ରାଣୀ ଦୁଃଖ ପାଇଲେ। ରାଣୀ ସେଡିକି ବେଳେ ରଜାଙ୍କୁ ସ୍ମରି ବଇଁଶୀ ବଜେଇଲେ। ରଜାଙ୍କର ତ ଆଗ କଥା ମନେ ଥାଏ, କହିଲେ, ରାଣୀ ପରିହାସରେ ବଇଁଶୀ ବଜାଉଛନ୍ତି। ଏ କଥା ବିଚାରି ରଜା ଅଇଲେ ନାହିଁ। ରାଣୀ ଏକା ଥରକେ ସାତୋଟି ଉତ୍ତମ ସୁନ୍ଦର ପୁଅ, ଗୋଟିଏ ସୁନାନାକୀ ଝିଅ ଜନମ କଲେ।

ଏଣେ ଫେରି ଏକା ମା ପେଟର ସାତ ଭଉଣୀ, ସେଥିରୁ ଛଅଟି ହେଲେ ରଜାଙ୍କ ପୋଇଲି, ଗୋଟିଏ ହେଲା ପାଟରାଣୀ, ଫେରି ଯେ ହେଲା ପାଟରାଣୀ ସେ ସବୁଙ୍କଠାରୁ ସାନ। ଯା' କି ରକତ ମାଂସ ଦହି ସହେ ? ମନେ ମନେ ଛ ଭଉଣୀ ବହେ ଲେଖାଏଁ ରହେଇ ଖବେଇ ହୁଅନ୍ତି, ସାନକୁ କେତେ କଥା ଶପଥ କରି ଧର୍ମଦେବତାଙ୍କୁ ସାକ୍ଷୀ ଦିଅନ୍ତି, ନିତ ତା ନାଆଁରେ ସନ୍ଧ୍ୟା ବଳିତା ବସାନ୍ତି। ଆପଣା ଭିତରେ ବିଚାରି ବିଚାରି ହେଉଥାନ୍ତି, ଥରେ ହେଲେ ଯେବେ ଯାକୁ ଆମ କଳରେ ପାଇବା, ତେବେ ଅଛିା କରି ଚେଙ୍ଗେ ଦବା।

ପିଲାଏ ଜନମ ହେଲେ, ଫୁଲ ପଡ଼ିଲା, ରାଣୀଙ୍କ ଚେତା ବୁଡ଼ିଲେ। ଛ ଭଉଣୀଯାକ ସେତେବେଳେ କଣ କଲେ, ତା ଆଗରୁ ସେ ଅଠୋଟିଯାକ ପିଲା ନେଇ ଅଠୋଟି କାଠ କୁଣ୍ଡେଇ ଦେଲେ,

ପିଲ୍ଲଙ୍କୁ ନେଇ ଖତଗଦାରେ ପୋତି ପକେଇଲେ । ରାଣୀ ଫେରି ଚେତା ପାଇଲେ, ଦେଖିଲେ ଅଠୋଟି କାଠ କୁଣ୍ଢେଇ ଜନମ କରିଛନ୍ତି । ସ୍ଥା ଦେଖି ବୁକୁ ଫାଟିଗଲା । ରଜାଙ୍କର ପୁଅ ହବ ବୋଲି କାହିଁ ବାଇଦ, କାହିଁ ଶଙ୍ଖ, କାହିଁ ଚେଲଙ୍ଗିବାଜା, କାହିଁ ନାଚ—ସ୍ଥା ହଉଛି; ବୁଝିଲା ବେଳକୁ ଅଠୋଟି କାଠ କୁଣ୍ଢେଇ ! ଯେ ଶୁଣିଲା ସେ ଅପସନ୍ଦ କଲା, ଯେ ଶୁଣିଲା ସେ ମୁଣ୍ଡରେ ହାତ ଦେଲା । ସମସ୍ତେ ଛି ଛି କଲେ । 'ରମ ବାଇଦ କୋଶେ—ଭୁଣ୍ଡି-ବାଇଦ ସହସ୍ର କୋଶ', ରାଜ୍ୟଯାକ ଏ କଥା ବୁଲି ପଡ଼ିଗଲା । ରଜା ଏ କଥା ଶୁଣିଲେ, ସତକୁ ସତ ଆସି ଦେଖନ୍ତି ଯେ ଏପରି ଏପରି ସମାଚାର । ତାଙ୍କୁ ଏ କଥା ବଡ଼ ସରମ ହେଲା, ପାତ୍ର ମନ୍ତ୍ରୀ ସମସ୍ତଙ୍କୁ ଡକେଇଲେ, ପଛକୁ ରଜାଙ୍କର ଆଜ୍ଞା ହେଲା ଯେ ରାଣୀକି ଲଣ୍ଡି କରି ଘୋଡ଼ାଶାଳରେ ରଖ, ସେ ଘୋଡ଼ା ଲଣ୍ଡି ପୋଛୁ । ଯେତେ ଯେ କହିଲେ, ରଜା ତ ସହଜେ ଅବୁଝା, ସେ କି ଆଉ ଶୁଣନ୍ତି ? ପଛକୁ ସେହି କଥା ହେଲା । ରାଣୀ କାନ୍ଦି ବୋବେଇ ଆପଣା କର୍ମ ଆଦରି ଘୋଡ଼ାଶାଳରେ ପଡ଼ିଥାନ୍ତି; ଯେ ରାନ୍ଧୁଁଥାଏ, ସେ ପଦେ କଲୁଗୁଣା ଦଉଥାଏ । ରଜା ଘରେ କଣ ସେ ଭୋଗ କରୁ ନ ଥିଲେ ! ଏତେ ଭାଗ୍ୟ ଯେ ପାଟ ପୀତାମ୍ବର ପିନ୍ଧି ହଗି ଯାଉ ଥିଲେ, ଘିଅରେ କୁଳୁକୁଳୁଆ କରୁଥିଲେ, ହଗିଗଲେ ସୁନ୍ଧା ଚୈରାବାଡ଼ ପଡ଼ୁ ଥିଲା; ଏବେ ଫେରି ଏତେ ଅବସ୍ଥା ଭୋଗ କଲେ !

ଏଣେ କଣ ହୋଇଛି—ଛ ଭଉଣୀଯାକ ତ ଖତଗଦାରେ ଅଠୋଟଯାକ ପିଲାଙ୍କୁ ପୋତି ଦେଇ ଆସିଲେ । ଖତଗଦାରୁ କୁକୁର ତାଙ୍କୁ ଗିଳି ଦେଲା । କୁକୁର ଯାଇ ସେ ପିଲାଙ୍କୁ ପୋଖରୀରେ ବାନ୍ତି କଲା । ପିଲାଏ ସେତେବେଳକୁ ବଞ୍ଚିଥାନ୍ତି । ଗଙ୍ଗାମାତା ସେ ପିଲା

ଅଠୋଟିଙ୍କୁ ରଖି ପାଳିଲେ । ଦିନକୁ ଦିନ ପିଲାଏ ବଢ଼ିଲେ, ଖେଳ ବୁଲି ଶିଖିଲେ । ଗଙ୍ଗାମାତା କଣ କଲେ, ସାତୋଟି ଅଣ୍ଡିର ପୁଅଙ୍କୁ ସାତୋଟି କାଠଘୋଡ଼ା ଦେଲେ ଖେଳିବେ ବୋଲି । ପିଲାଏ ସାତୋଟି ଘୋଡ଼ା ନେଇ ନିତ ପୋଖରୀ ତୁଠରେ ଖେଳୁଥାନ୍ତି । ଘୋଡ଼ାଙ୍କୁ ଜଣେ ପାଣିକୁ ନେଇ ଘୋଡ଼ାଙ୍କ ମୁହଁ ପାଣିରେ ମାଡ଼ୁଥାନ୍ତି, କହୁଥାନ୍ତି—'କାଠ ଘୋଡ଼ା ପାଣି ପି,' 'କାଠ ଘୋଡ଼ା ପାଣି ପି,' 'କାଠ ଘୋଡ଼ା ପାଣି ପି' । ପୋଖରୀଟି ରଜାଙ୍କ ନଅର ପାଖରେ । ରଜାଙ୍କ ଧୋବା ସେହି ତୁଠରେ ଲୁଗା କାଚେ । ଲୁଗା କାଚୁଥାଏ, ପିଲା ଘୋଡ଼ା ଖେଳାଉଥାନ୍ତି ଦେଖେ । ପିଲାଙ୍କୁ ଦେଖି କହିଲା, "ବାଇ ହୋଇଛ କି ବାଳୁତ ଭାଇ, କାଠର ଘୋଡ଼ା କି ପାଣି ପିଇ ?" ସେଥିକୁ ପିଲାଏ କହିଲେ, "ବାଇ ହୋଇଛୁ କି ସେଠି ଭାଇ, ମଣିଷ ହୋଇ କି କାଠ କୁଣ୍ଢେଇ ନେଇ ?" ଧୋବା ୟା ଶୁଣି ବଡ଼ ଅଚମ୍ଭିତ ହେଲା । ରଜାଙ୍କ ନଅରରେ ଯାଇ ଖବର କଲା । ରଜା ପୋଖରୀ ତୁଠକୁ ମଣିଷ ପଠେଇଲେ । ଗଙ୍ଗାମାତା ମାୟା କରି ପିଲାଗୁଡ଼ିଙ୍କୁ ଲୁଚେଇ ଦେଲେ । ଯେ ଶୁଣିଲା, ସେ କାବା ! ଦିନାକେତେ ଗଲରୁ ଗଙ୍ଗାମାତା ମାୟାରେ ସାତୋଟି ଭାଇଙ୍କି ସାତୋଟି ଅର୍ଜୁନ ଗଛ, ଆଉ ଭଉଣୀକି ପାଟଳୀ ଗଛଟିଏ କରି ସେହି ପୋଖରୀ ହୁଡ଼ାରେ ଲଗେଇ ଦେଲେ । ପାଟଳୀ ଗଛ ଫୁଲରେ ଭାଙ୍ଗି ପଡ଼ୁଥାଏ । ସମସ୍ତେ ଦେଖି ଅଚମ୍ଭିତ ହେଲେ । ଦିନେ ସେ ବାଟେ ଶଗଡ଼ିଆ ଯାଉଥିଲେ, ସେ ଗଛରୁ ଫୁଲ ଡାଳ କେତେ ଭାଙ୍ଗି ନେଲେ । ରଜାଙ୍କ ମାଳୀ ତାଙ୍କୁ ସେ ଫୁଲ ମାଗିଲା । ଶଗଡ଼ିଆ କହିଲେ, ତୁମ ନଅର ପାଖ ପୋଖରୀହୁଡ଼ାରେ ଫୁଲ ଭାଙ୍ଗି ପଡ଼ୁଛି, ତୁମେ ଆମକୁ କଣ ମାଗୁଛ ? ମାଳୀ ପୋଖରୀହୁଡ଼ାରେ ଦେଖିଲା, ଏ ପାଟଳୀ ଗଛଟି, ଆଉ ଏ ସାତୋଟି ଅର୍ଜୁନ ଗଛ;

ଏଠେଇଁ ତ କେବେ ଦେଖା ନ ଥିଲା, ଏ ଏଠିକି କାହୁଁ ଅଇଲା ?
ମାଳୀକି ଦେଖି ପାଟଳୀ ଗଛଟି ଗୀତ ଗାଇଲା—

ଭାଇ ରେ ଭାଇ ରେ, ଅମ ବାପାଙ୍କର ମାଳୀ ଅସିଅଛୁ,
ଦେବା କି ନ ଦେବା ଫୁଲ୍ ?

ସେଥିରୁ ସାତୋଟିଯାକ ଅର୍ଜୁନ ଗଛ ଅଉ ଗୋଟିଏ ଗୀତ ଗାଇଲେ—

ସ୍ୱର୍ଗେ ଲଗୁ ଡାଳ, ମର୍ତ୍ତେ ଲଗୁ ଡାଳ,
ଅମେ ସାତ ଭାଇ ଭଉଣୀଏ ଥାଉଁ ମା ପୋଛେ ଘୋଡ଼ାଶାଳ—
ଅଲୋ ଲୋ ଭଉଣି ! ନ ଦଅ ନ ଦଅ ଫୁଲ୍ ।

ସ୍ୱା କହୁଲାରୁ ପାଟଳୀଗଛ ଡାଳ ଉପରକୁ ଉଠି ଯାଉଥାଏ, ଫେର ତଳକୁ ନଇଁ ପଡୁଥାଏ । ଅଉ ମାଳୀ ଫୁଲ୍ ତୋଳି ପାରିଲା ନାହିଁ । ଘରକୁ ଅଇଲା, ରଜାଙ୍କୁ ଏକଥା ଜଣେଇଲା । ରଜା ମନ୍ତ୍ରିଙ୍କି ପଠେଇଲେ । ମନ୍ତ୍ରୀ ଗଛମୂଳକୁ ଗଲାରୁ ଗଛଯାକ ଗୀତ ବୋଲା-ବୋଲି ହେଲେ—

"ଭାଇ ରେ ଭାଇ ରେ, ଅମ ବାପାଙ୍କ ମନ୍ତ୍ରୀ ଅଇଲେଣି,
ଦେବା କି ନ ଦେବା ଫୁଲ୍ ?"
"ସ୍ୱର୍ଗେ ଲାଗୁ ଡାଳ, ମର୍ତ୍ତେ ଲାଗୁ ଡାଳ,
ଅମେ ସାତ ଭାଇ ଭଉଣୀଏ ଥାଉଁ ମା ପୋଛେ ଘୋଡ଼ାଶାଳ—
ଅଲୋ ଲୋ ଭଉଣି ! ନ ଦଅ ନ ଦଅ ଫୁଲ୍ ।"

ମନ୍ତ୍ରୀ ଏ ସମାଗୃର ଦେଖି ଯାଇ ରଜାଙ୍କୁ କହିଲେ, ପଛକୁ ରଜା ନିଜେ ଅଇଲେ । ରଜାଙ୍କୁ ଦେଖି ଗଛଯାକ ବୋଲାବୋଲି ହେଲେ—

"ଖାଇ ରେ ଖାଇ ରେ, ଆମ ବାପା ଏବେ ନାଜେ ଅଇଲେଣି,
ଦେବା କି ନ ଦେବା ଫୁଲ ?"
"ସ୍ୱର୍ଗେ ଲଗୁ ଡାଳ, ମର୍ତ୍ତେ ଲଗୁ ଡାଳ,
ଅମେ ସାତ ଭାଇ ଭଉଣୀଏ ଥାଉଁ ମା ପୋଛେ ଘୋଡ଼ାଶାଳ—
ଅଲୋ ଲୋ ଭଉଣି ! ନ ଦଅ ନ ଦଅ ଫୁଲ ।"

ଏହା ଶୁଣି ରଜାଙ୍କର ଆଗ କଥା ସବୁ ମନେ ପଡ଼ିଲା । ରାଣୀ ଘୋଡ଼ାଶାଳରେ ଲଣ୍ଡି ପୋଛୁଥିଲେ । ତାଙ୍କୁ ସେଇଠିକି ଡକେଇ ଅଣିଲେ । ରାଣୀ ସେ ଗଛମୂଳକୁ ଗଲାରୁ ସବୁ ଡାଳଯାକ ଭାଙ୍ଗି ପଡ଼ି ମା ଉପରେ କୁଢ଼େଇ ହୋଇ ପଡ଼ିଲା । ସେହିକ୍ଷଣି ସାତୋଟି ଉତ୍ତମ ସୁନ୍ଦର ପୁଅ, ସୁନାନାକୀ ଝିଅ ହୋଇ ମା ଚାରିପାଖେ ବେଢ଼ି ଠିଆ ହୋଇଗଲେ । ରଜା ଏହା ଦେଖି କାବା । ଯେ ଦେଖିଲା, ସେ ଅହା କଲା । ସେଠିକି ରଜା, ପାତ୍ର, ମନ୍ତ୍ରୀ, ତୁରୀ, କାହାଳୀ, ଯାନ ବାହାନ ଅଣେଇ ଭାଇ ଭଉଣୀ ମା ସମସ୍ତଙ୍କୁ ଗାଧୋଇ ପାଧୋଇ ପାଟ ପୀତାମ୍ବର ପିନ୍ଧେଇ ନଅରକୁ ନେଇଗଲେ । କେତେ ଉତ୍ସବ ହେଲା, କେତେ ଲୋକ ଖାଇଲେ, ରାଣୀ ସବୁ ପୂର୍ବ କଥା କହିଲେ । ରଜା ସେଥିରୁ ଛ ଭଉଣୀଙ୍କି ତଳ କଣ୍ଟା ଉପର କଣ୍ଟା କରି କୂଅ ଖୋଳି ସେ କୂଅରେ ପୋତି ପକେଇଲେ । ରାଣୀଙ୍କି, ପୁଅ ଝିଅଙ୍କୁ ନେଇ ଘର ଦୁଆର କଲେ । ସୁନାନାକୀ ଝିଅକୁ ଠାକୁର ରଜାଙ୍କ ପୁଅ ସଙ୍ଗେ ବାହା ଦେଲେ । କେତେ ପିଠା ବାଣ୍ଟିଲେ, କେତେ ଲୁଗା ବାଣ୍ଟିଲେ, ମୁଁ ଗଲି ଯେ, ମୋତେ କଥା କହିଲେ ନାହିଁ । କଳିକତାଠାରୁ ପୁରସ୍ତମଯାଏ ଖଣ୍ଡେ ଲୁଗା ଦେଲେ ଯେ, ସେ ମୋ କାନ୍ଧକୁ ପାଇଲା ନାହିଁ ।

ମୋ କଥାଟି ସରିଲା—ଫୁଲ୍ ଗଛଟି ମଲା—
ହଇ ରେ ଫୁଲଗଛ, ତୁ କାହିଁକି ମଲୁ ?
ମତେ କାଳୀଗାଈ ଖାଇଲା ।

ହଇ ଲୋ କାଳୀଗାଈ, କିଆଁ ଖାଇଲୁ ?
ମତେ ଗଉଡ଼ ଜଗିଲା ନାହିଁ ।

ହଇ ରେ ଗଉଡ଼, ତୁ କିଆଁ ଜଗିଲୁ ନାହିଁ ?
ମତେ ବଡ଼ ବୋହୂ ଖାଇବାକୁ ଦେଲା ନାହିଁ ।

ହଇ ଲୋ ବୋହୂ, ତୁ କିଆଁ ଖାଇବାକୁ ଦେଲୁ ନାହିଁ ?
ପୁଅ କାନ୍ଦିଲା ।

ହଇ ରେ ପୁଅ, ତୁ କିଆଁ କାନ୍ଦିଲୁ ?
ମତେ ଧୂଳିଆ ଜନ୍ଦା କାମୁଡ଼ିଲା ।

ହଇ ରେ ଧୂଳିଆ ଜନ୍ଦା, ତୁ କିଆଁ କାମୁଡ଼ିଲୁ ?
ଭୂଇଁ ତଳେ ତଳେ ଥାଏଁ,
କଅଁଳ ମାଉଁସ ଟିକିଏ ପାଇଲେ ଚୁଟ୍ କିନା ଖାଏଁ ।



# କଲରାବେଣ୍ଟ କଥା

ଏକ ଗାଁରେ ଗୋଟିଏ ଚଣ୍ଡୀପୁଅ ଅନନ୍ତା ଥାଏ । ତା ମା ଧନଯାକ ସ୍ତ୍ରୀ ଦୁଆର ତା ଦୁଆର ବୁଲି ଢେଙ୍କିରୁ ଧାନ କୁଟି ଖୁଦକ ସେରେ, ଢେଙ୍କିରୁ ଧାନ ଉସେଇଁ ଗୁଣ୍ଡକ ପାଏ, ତାହାଘରୁ ହଳଦ ବାଟି ଲୁଣ ପୋଷେ, ଏହିପରି ଅଣେ । ଏଣେ ଚଣ୍ଡୀପୁଅ ଅନନ୍ତା ପେଟେ ଗିଳି ଧନଯାକ ସ୍ତ୍ରୀକୁ ମାରି, ତାକୁ ଧରି ଏହିପରି କରି ବୁଲୁଥାଏ; କୁଟା ଖଣ୍ଡିକ ଦି ଖଣ୍ଡ କରେ ନାହିଁ । ଖାଇଲା ବେଳକୁ ଅଜା ତଅଣ ହେଲା ନାହିଁ, ଅଜା ଭଜା ନାହିଁ, ଏହିପରି ନାନାଦି ପର୍ବ ଲଗାଏ, ମାକୁ ମାରେ, ହାଣ୍ଡି କୁଣ୍ଡେଇ ବାଡ଼େଇ ଦିଏ । ଦିନେ ମା କେତେ ଅଡ଼ୁ ମାଗି ଯାଚି ସାତ ତଅଣ ଅଠ ଭଜା କରି ଅନନ୍ତାକୁ ଖାଇବାକୁ ଦେଲା । ଅନନ୍ତା ଅଜା ଖାଇ ପିଇ ସାରି ଭାରି ଖୁସି । ଖାଇ ସାରିଲାରୁ ମା ଅନନ୍ତାକୁ ସାକୁଲେଇ କରି କହିଲା, ଅରେ ପୁତ ! ଏ ଗାଁରେ ଲୋକେ ପରିବାରେ ଭାସୁଛନ୍ତି, ଅମର ଏତେ ବାଡ଼ ପଡ଼ିଆ ପଡ଼ିଛି, ବୁଦାଏ ଖଣ୍ଡେ ପନି ପରିବା ଲଗିଲେ ଅମେ ଅଉ କୁଅଡ଼େ ଖୋଜିବାକୁ ଯାନ୍ତୁ ନାହିଁ । ଅନନ୍ତା ତହିଁ ଅର ଦିନ ସକାଳୁ ଉଠି ମାକୁ ପରିବା ମଞ୍ଜି ମାଗିଲା । ମା ଗୋଟିଏ କଲରାମଞ୍ଜି ଠଣାରେ ଗୋବର ଭିତରେ ସାଇତି ରଖିଥିଲା, ତାହାରି କରିଦେଲା । ଅନନ୍ତା ଖଣତି ନେଇ ସେ ମଞ୍ଜିଟି ପୋତି ଅସିଲା । ସନ୍ଧ୍ୟାବେଳକୁ ଟୋପିଏ ପାଣି ଦେଇ ମଞ୍ଜିକି କହିଲା, 'ଯେବେ କାଲିକି ଗଜା ହୋଇ ନ ଥିବୁ, ତେବେ ମାମୁଘର କଟୁରି ଅଣି ସାତ ଖଣ୍ଡ କରି କାଟିବି ।' ଚଣ୍ଡୀପୁଅ ଅନନ୍ତା ବଡ଼ ଦୁଷ୍ଟ, ତାକୁ ନ ଡରେ କିଏ ? ତହିଁ ଅର ଦିନ ସତକୁ ସତ ଦେଖିଲା ବେଳକୁ କଲରା ଗଜା

ବାହାରନ୍ତି । ଫେର ସନ୍ଧ୍ୟାବେଳକୁ ଗଛରେ ପାଣି ଦେଲା ବେଳେ ଅନନ୍ତା କହୁଛି, ଯେବେ କାଲକୁ ଦ'ପତ୍ର ନ ହୋଇଥିବୁ, ତେବେ ମାମୁଘର କତୁରି ଆଣି ସାତ ଖଣ୍ଡ କରିବି । ସତକୁ ସତ ତହିଁ ଆର ଦିନକୁ ଗଛରୁ ଦିଓଟି ପତ୍ର ହୋଇଛି । ଏହିପରି-ଭାବ ପାଣି ଦେଲା ବେଳେ କଲରା ଗଛକୁ ଡରାଏ । ଗୁହୁଁ ଗୁହୁଁ ଦିନକୁ ଦିନ ଗୁଚ୍ଛ ପତ୍ର ହେଲା, ଲଟା ମାଡ଼ିଲା, କଲରା କଷିଟିଏ ହେଲା । ପଛକୁ କଲରାଟି ପାଚିଲା । ଅନନ୍ତାର ଆନନ୍ଦର ସୀମା ନାହିଁ । ଯେ ଦାଣ୍ଡରେ ଯାଏ, ତାକୁ ନେଇ କଲରାଟି ଦେଖାଏ । ଆଜ ଅନନ୍ତାର ଗୋଡ଼ ତଳେ ଲଗିବାକୁ ନାହିଁ ।

ପାଚିଲା କଲରାକୁ କୁଆ ବାଇ । ତାମରା କୁଆଟାଏ କଲରାଟିକୁ ଦେଖିଲା । କଲରାକୁ କହିଲା, 'ହେ କଲରା, ମୁଁ ତତେ ଖାଆନ୍ତି !' କଲରା କହିଲା, 'ଯା, ମାମୁଘର କୂଅରେ ଥଣ୍ଟ ଧୋଇ ଆସିବୁ, ତେବେ ମତେ ଖାଇବୁ ।' କୁଆ ଯାଇ ମାମୁଘର କୂଅ ପାଖରେ ପହଞ୍ଚି କୂଅକୁ କହିଲା, 'ରେ କୂଅ ଦେ ପାଣି, ଧୁଏଁ ଥଣ୍ଟ, ଧାଇଁ ଧାଇଁ ଖାଏଁ କଲୁସ୍ୱବେଣ୍ଟ ।' କୂଅ କହିଲା, 'ଯା' କୁମ୍ଭାର ଘରୁ କଳସଟିଏ ଆଣିବୁ, ପାଣି କାଢ଼ି ଦେବୁ ।' କୁଆ କୁମ୍ଭାର ଘରକୁ ଯାଇ କହିଲା, 'ଦେ କୁମ୍ଭାର କଳସ ଗୋଟି, କାଢ଼େଁ ପାଣି, ଧୁଏଁ ଥଣ୍ଟ, ଧାଇଁ ଧାଇଁ ଖାଏଁ କଲୁସ୍ୱବେଣ୍ଟ ।' କୁମ୍ଭାର କହିଲା, 'ଯା' ବିଲରୁ ମାଟି ଆଣିବୁ, ମୁଁ କଳସ ଗଢ଼ି ଦେବି ।' କୁଆ ଯାଇ ବିଲରେ ପହଞ୍ଚିଲା । କହିଲା, 'ରେ ବିଲ ଦେ ମାଟି, ଗଢ଼ୁ କୁମ୍ଭାର କଳସ ଗୋଟି, କାଢ଼େଁ ପାଣି, ଧୁଏଁ ଥଣ୍ଟ, ଧାଇଁ ଧାଇଁ ଖାଏଁ କଲୁସ୍ୱବେଣ୍ଟ ।' ବିଲ କହିଲା, 'ଯା' ମିରଗ ପାଖରୁ ଶିଙ୍ଗ ଆଣ, ମାଟି ଖୋଳିବୁ, ନବୁ ।' କୁଆ ଯାଇ ମିରଗ ପାଖରେ କହିଲା, 'ରେ ମିରଗ

ଦେ ଶିଙ୍ଘ, ଖୋଳେ ମାଟି, ଗଢ଼ୁ କୁମ୍ଭର କଳସ ଗୋଟି, ଭାଡ଼େ
ପାଣି, ଧୁଏଁ ଥଣ୍ଟ, ଧାଇଁ ଧାଇଁ ଖାଏ କଲୁସ୍ୱେଣ୍ଟ ।' ମିରଗ
କହିଲା, 'ଯା, କାଳୀଗାଈଠଉଁ ଦୁଧ ଆଣି ଦେ, ମୁଁ ପିଇଲେ ଶିଙ୍ଘ
ଦେବି ।' କୁଆ ଯାଇ କାଳୀଗାଈକି କହିଲା, 'ରେ କାଳୀଗାଈ ଦେ
ଦୁଧ, ପିଇ ମିରଗ ଦେଉ ଶିଙ୍ଘ, ଖୋଳେଁ ମାଟି, ଗଢ଼ୁ କୁମ୍ଭାର କଳସ
ଗୋଟି, ଭାଡ଼େଁ ପାଣି, ଧୁଏଁ ଥଣ୍ଟ, ଧାଇଁ ଧାଇଁ ଖାଏଁ କଲୁସ୍ୱେଣ୍ଟ ।'
କାଳୀଗାଈ କହିଲା, 'ମତେ ହୁଡ଼ାରୁ ଘାସ ଆଣି ଦେ, ମୁଁ ଦୁଧ ଦେବି ।'
କୁଆ ହୁଡ଼ା ପାଖରେ ପହଞ୍ଚି କହିଲା, 'ରେ ହୁଡ଼ା ଦେ ଘାସ, ଖାଉ
କାଳୀଗାଈ ଦଉ ଦୁଧ, ପିଇ ମିରଗ, ଦଉ ଶିଙ୍ଘ, ଖୋଳେଁ ମାଟି,
ଗଢ଼ୁ କୁମ୍ଭାର କଳସ ଗୋଟି, ଭାଡ଼େଁ ପାଣି, ଧୁଏଁ ଥଣ୍ଟ, ଧାଇଁ
ଧାଇଁ ଖାଏଁ କଲୁସ୍ୱେଣ୍ଟ ।' ହୁଡ଼ା କହିଲା, 'ଯା' କମାରଘରୁ ଦା
ଆଣ, ଘାସ କାଟି ନେଇକରି ଯିବୁ ।' କୁଆ ଯାଇ କମାରଶାଳରେ
ପହଞ୍ଚିଲା । କମାରକୁ କହିଲା, 'ରେ କମାର ଦେ ଦା, କାଟେଁ ଘାସ,
ଖାଉ କାଳୀଗାଈ ଦଉ ଦୁଧ, ପିଇ ମିରଗ ଦଉ ଶିଙ୍ଘ, ଖୋଳେଁ
ମାଟି, ଗଢ଼ୁ କୁମ୍ଭାର କଳସ ଗୋଟି, ଭାଡ଼େଁ ପାଣି, ଧୁଏଁ ଥଣ୍ଟ,
ଧାଇଁ ଧାଇଁ ଖାଏଁ କଲୁସ୍ୱେଣ୍ଟ ।' କମାର ମନେ ମନେ କହିଲା,
କୁଅଟିଏ ତୋର ଏତେ ଫିକର ? ରହ, ଦଉଛି ଚେଁଖେ । କୁଅକୁ
କହିଲା, 'ତୋର ତ ହାତ ନାହିଁ, କେଉଁଥିରେ ଦା ନବୁ ?' କୁଆ
କହିଲା, 'ମୋ ଥଣ୍ଟ ଭିତରେ ଥୋଇ ଦେ, ମୁଁ ନେବି ।' କମାର ଦା
ଖଣ୍ଡେ ଅଚ୍ଛା କରି ନିଆଁରେ ତତେଇ କରି କୁଆ ଥଣ୍ଟରେ ରଖି
ଦେଲା । କୁଅଟି ଛଟ୍ ଛଟ୍ ହୋଇ ମରିଗଲା । ତହୁଁ ଆଉ ଦିନ
ଚାଣ୍ଡୀପୁଅ ଅନନ୍ତା ପାଠକ କଲସାଟି ଭାଜି ସୁଖରେ ଖାଇଲା । ମୋ
ପାଇଁ ଖଣ୍ଡେ ରଖିଲା ନାହିଁ ।

ମୋ କଥାଟି ସରିଲା, ଫୁଲ ଗଛଟି ମଲା । * * *

# "ଏକ ଦୁଇ ତିନି ଚାରି * * * ଏଗାର ବାର"

ଗୋଟିଏ ରାଜ୍ୟରେ ଏକ ରଜା ଥାଆନ୍ତି । ତାଙ୍କ ରାଣୀ ତାଙ୍କୁ ନିତି କହନ୍ତି, ଗୋଟିଏ କଥା କହିଲ ନାହିଁ ? ରଜା ଅତି ବ୍ୟସ୍ତ ହୋଇ ଦିନେ କହିଲେ, ଯେବେ ମୋ କଥାର ଉତ୍ତର ନ ଦେବ, ତେବେ ଶୂଳି ପାଇବ । ରାଣୀ ମନେ ମନେ ବିଚାରିଲେ, ରଜା କଣ ସତେ ମତେ ଶୂଳିରେ ଦେବେ ? ରାଣୀ କହିଲେ, ହେଉ । ସେଥିରୁ ରଜା କହିଲେ, "ଏକ ଦୁଇ ତିନି ଚାରି ପାଞ୍ଚ ଛଅ ସାତ ଆଠ ନଅ ଦଶ ଏଗାର ବାର, ଏ କଥାକୁ କହି ନ ପାରିଲେ ଗାଁ ବାହାରେ ନେଇ ମାର ।" ରାଣୀ ଏଥିର ଉତ୍ତର ଦେଇ ପାରିଲେ ନାହିଁ । ରଜା ତ ଏକଗୁଣ୍ଡା । ଯାହା କହିଛନ୍ତି, ସେ କଥା ଆଉ ନ ଫେରେ । ମନ୍ତ୍ରୀଙ୍କି ହୁକୁମ ଦେଲେ, ରାଣୀଙ୍କି ନେଇ ଶୂଳିଅପଦାରେ ଶୂଳି ଦେଇ ରକତ ଅଣିଲେ ମୁଁ ଗାଧୋଇ ପିନ୍ଧିଲେ ମଣୋହି କରିବି । ମନ୍ତ୍ରୀ ଏହା ଶୁଣି ତଟସ୍ଥ ହେଲେ । ପଛକୁ ରଜା କହିଲେ, ମତେ ରାଣୀଙ୍କ ରକତ ଅଣି ନ ଦେଲେ କାଲି ସକାଳେ ତୁମେ ସବଂଶେ ହାଣି ଖାଇବ । ମନ୍ତ୍ରୀ ରାଣୀଙ୍କି ନେଇ ଶୂଳିଅପଦାକୁ ଗଲେ । ବାଟରେ ରାଣୀ ମନ୍ତ୍ରୀଙ୍କି କହିଲେ, ମୋର ମାସ ଗଡ଼ୁଛି, ତୁମେ ମତେ ଶୂଳି ଦେଲେ ସ୍ତ୍ରିରୀହତ୍ୟା ଓ ବାଳକହତ୍ୟା ଦୋଷ ଲାଗିବ । ମତେ ଶୂଳି ଦିଅ ନା, ମୁଁ ତୁମର ଧରମ ଝିଅ ହେଲି । ମନ୍ତ୍ରୀ ଏହା ଶୁଣି ରାଣୀଙ୍କି ନେଇ ଆପଣା ଘରେ ରଖିଲେ, ଏଣେ ଗୋଟିଏ ଚଢ଼େଇ ମାରି ତା ରକତ ଅଣି ରଜାଙ୍କୁ ଦେଲେ । ରଜା ରକତ ଗାଧୋଇ ପିନ୍ଧି ମଣୋହି କଲେ । ରାଣୀ ମନ୍ତ୍ରୀଙ୍କ ସଙ୍ଗେ ଧରମ ଝିଅ ହୋଇ ଥାଆନ୍ତି । ଦିନେ କହିଲେ,

ମତେ ବଣରେ ନଅର କରି ଦିଅ, ମୁଁ ରହିବି । ମନ୍ତ୍ରୀ ଅଗ୍ନାଗ୍ନି ବନସ୍ତ ଭିତରେ ଉତ୍ତମ ସୁନ୍ଦର ନଅର ତୋଳାଇ ଦେଲେ । ରାଣୀ ସେଇଠି ଯାଇ ରହିଲେ । ନଅର ଭିତରେ କୂଅ, ପୋଖରୀ, ଦୋକାନ ସବୁ କରି ଦେଲେ । ରହୁଁ ରହୁଁ ଆସି ଦଶ ମାସ ଦଶ ଦିନ ପୂରିଲା । ରାଣୀ ଉତ୍ତମ ସୁନ୍ଦର କୁମରଟିଏ ଜନମ କଲେ । ପୁଅ ଦିନକୁ ଦିନ ବଢ଼ିଲା, ଚାହାଳିକି ଯାଇ ପାଠ ପଢ଼ିଲା । ପଢ଼ୁ ପଢ଼ୁ ଚାରି ମାସରେ ଚାରି ପାଠ ହାସଲ କଲା । ଦିନେ ପଢ଼ୁ ପଢ଼ୁ ରଜାପୁଅର ଖଡ଼ି ଗଡ଼ିଗଲା, ସାଙ୍ଗ ପାଠୁଆଙ୍କୁ କହିଲା, ମୋ ଖଡ଼ି ଗୋଟେଇ ଆଣି ଦିଅ । ସାଙ୍ଗ ପିଲାଏ କହିଲେ, ତୁ ଅଣବାପୁଅ, ତୋ ଖଡ଼ି ଆମେ ଉଠେଇ ଆଣି ଦେବୁ ନାହିଁ । ଏହା ଶୁଣି ରଜାପୁଅ ମନରେ ରାଗ ହେଲା । ଘରକୁ ଆସିଲା, ଗୋଟିଏ ଘରେ ମୂଷାମାଟି ରଣଭଣି, ବାଉଡ଼ିଗୁହ ସଣାହଣି, ସେହି ଘରେ କବାଟ କିଳି ମୁହଁ ମାଡ଼ି ଶୋଇଲା । ଖିଆ ନାହିଁ, ପିଆ ନାହିଁ, ଦିନ ହେଲାଣି ଆସି ଦି ପହର । ରାଣୀ ଆସି କବାଟ ପାଖରେ ଡାକିଲେ, 'ପୁତ ! ହଜି ଯାଇଥିଲେ ଖୋଜେଇ ଦେବି, ଭାଙ୍ଗି ଯାଇଥିଲେ ଗଢ଼େଇ ଦେବି । ତୋତେ କି କଥା ଅପୂରୁବ ? ତୁ କବାଟ ଫିଟା ।' ରଜାପୁଅ କହିଲା, 'ସତ୍ୟ କର, ମୁଁ ଯାହା ପଚାରିବି ତୁ ସତ କହିବୁ, ମୁଁ ତେବେ ଯାଇ କବାଟ ଫିଟେଇବି ।' ରାଣୀ ସତ୍ୟ କଲେ । ରଜାପୁଅ ଗାଧୋଇ ପାଧୋଇ ଗଣ୍ଡାଏ ଖାଇଲା । ଖାଇ ସାରିଲାରୁ ମାକୁ ପଚାରିଲା, 'ମୋ ବାପ କିଏ ?' ମା ସବୁ ପୂର୍ବ କଥା କହିଲା । ପଛକୁ କହିଲା, ତୋ ବାପ ମତେ ପଚାରିଲେ, ଏକ ଦୁଇ ତିନି ଚାରି ପାଞ୍ଚ ଛ ସାତ ଆଠ ନଅ ଦଶ ଏଗାର ବାର, ଏ କଥାକୁ କହି ନ ପାରିଲେ ଗାଁ ବାହାରେ ନେଇ ମାର । ରାଣୀ ସବୁ କଥା କହି-ଗଲେ, ତେବେ ସୁଦ୍ଧା ରଜାପୁଅ ମନରେ ବିଶ୍ୱାସ ହେଲା ନାହିଁ । ଯାଇଁ ମନ୍ତ୍ରୀଙ୍କି ସତ୍ୟ କରେଇଲା । ମନ୍ତ୍ରୀ ସବୁ ପୂର୍ବ କଥା କହିଲେ ।

ରଜାପୁଅ ମାଙ୍କୁ କହିଲା, ମତେ କିଛି ବାଟଖରଚ ଦେ । ମୁଁ ବିଦେଶ ଯିବି, ଏ କଥାର ଉତ୍ତର ଆଣିବି, ଘରକୁ ଆସିବି । ରାଣୀ ତେତେ ମନା କଲେ । ରଜାପୁଅ ଏକା ଜିଦ ଧରିଲା । କିଛି ଟଙ୍କାପଇସା ଧରି ମନ୍ତ୍ରୀଙ୍କ ଘୋଡ଼ାଶାଳରୁ ପକ୍ଷିରାଜ ଘୋଡ଼ାଟିଏ ନେଇ ପାଗପଟୁକା ପିନ୍ଧିଲା । ଗୃହ ହତିଆର ବାନ୍ଧି ବିଦେଶ ଗଲା । ଯାଉଁ ଯାଉଁ ଆଗୁ ଏକ ରାଇଜ ପଡ଼ିଲା । ସେ ରାଇଜର ଜେମାଦେଈ ଗଳା ଧଳା ନାଲି ତିନି ଗାର ଆଗରେ କାଟି ଦେଇ ବସିଛି । ଏ ଗାରକୁ ଡେଇଁ ମତେ ପାଠରେ ଯେ ଜିଣିବ, ମୁଁ ତାକୁ ବିଭା ହେବି; ଏହିପରି ସତ୍ୟ କରିଛି । ରଜାପୁଅ ସେ ଗାରକୁ ଡେଇଁ କରି ଗଲା । ରଜାଝିଅ ସାଙ୍ଗରେ ରଜାପୁଅର ପାଠ ପରୀକ୍ଷା ହେଲା । ରଜାପୁଅ ଜେମାକୁ ପାଠରେ ଜିଣିଲା । ଜେମା କହିଲା, ମୁଁ ତମକୁ ବିଭା ହେବି । ରଜାପୁଅ କହିଲା, ମୁଁ ଯେଉଁ କଥାର ଉତ୍ତର ନବାକୁ ଆସିଛି, ସେ କଥା ନ ମିଳିଲେ ମୁଁ ବିଭା ହେବି ନାହିଁ । ରଜାଝିଅ କହିଲା, ମୁଁ ତୁମ ଦେଶକୁ ଯାଏଁ, ଏ କଥାର ଉତ୍ତର ଦେବି । ଜେମା ଏ କଥା ସତ୍ୟ କଲାରୁ ରଜାପୁଅ ବିଭା ହେଲା । ଯାନ ବାହନ ଚତୁରଙ୍ଗ ବଳ ପାଲିଙ୍କି ପାଟଛତା ହାତୀ ଘୋଡ଼ା ନେଇ, ଜେମାକୁ ନେଇ ଆପଣା ଦେଶକୁ ଗଲା । ରଜା ଦେଖି ମନ୍ତ୍ରୀଙ୍କୁ ପଚାରିଲେ, ଏ କିଏ ସେ ? ମନ୍ତ୍ରୀ କହିଲେ ମୋ ଝିଅର ପୁଅ ବିଭା ହବାକୁ ଯାଇଥିଲା, ବିଭା ହୋଇ ଘରକୁ ଆସିଲା । ଘରେ ପହଞ୍ଚି ରଜାଝିଅ ମନ୍ତ୍ରୀଙ୍କି କହିଲା, ରଜାଙ୍କ ନଅର ଆଗରେ ଆମର ସାତ ଗୁଣ କରି ନଅର ତୋଳାଅ । ରଜାଙ୍କ ବଗିଚୁ ଆଗରେ ଆମର ସାତ ଗୁଣ କରି ବଗିଚୁ କର । ରଜାପୁଅ ମୁଁ ଦୁହେଁଯାକ ସେଠେଇଁ ରହିବୁଁ । କହିବା ଭଳି ନଅର, ବଗିଚୁ ସବୁ ହେଲା । ରଜାପୁଅ ବୋହୂ ଦୁହେଁଯାକ ସେଠେଇଁ ରହିଲେ । ଏଣିକି ରଜା ଯେତେବେଳେ ନଅରରେ ଯାତ୍ରା କରନ୍ତି, ବୋହୂ ତ ନଅରରେ ସିମିତ କରେ । ରଜା ଯେତେବେଳେ ବଗିଚୁକୁ ବାହାରନ୍ତି, ବୋହୂ

ଟେଢ଼ଇବବେଳେ ବଗିଚାକୁ ବାହାରେ । ଏଣେ ରଜା ସେ ବୋହୂଙ୍କୁ ଦେଖିଲେ । ରଜା ତ ଜାଣନ୍ତି ନାହିଁ ତାଙ୍କ ବୋହୂ ବୋଲି ! ରଜା ତହିଁ ଆର ଦିନ ମନ୍ତ୍ରୀଙ୍କି କହିଲେ, ମନ୍ତ୍ରି ! ତୁମ ନାତୁଣୀବୋହୂ ଆମକୁ ବାହା କରେଇ ଦିଅ, ତୁମ ନାତିକୁ ଆଉ ଗୋଟିଏ ଦେଖି ବାହା କରେଇ ଦବା । ମନ୍ତ୍ରୀ କହିଲେ, ମୁଁ ମୋ ନାତୁଣୀବୋହୂକୁ ପଚାରେଁ, ସେ ଯେବେ ମଙ୍ଗିବ, ତେବେ ଛାମୁ ତାକୁ ବାହା ହେବେ । ଘରେ ଯାଇ ବୋହୂଝିଅକୁ ପଚାରିଲେ, ତହିଁ ଆର ଦିନ ଆସି ରଜାଙ୍କୁ ଏତଲା ଦେଲେ —ମଣିମା ! ବୋହୂ କହୁଛି, ଯେବେ ରଜା ରାଣୀ ଦୁହେଁଯାକ ଦୋ'ମଙ୍ଗବେ ବସି ଉପରବୋହିଁଇ କରି ଶୃଙ୍ଖଳରେ କାଠ ବେଳୁଅଳରେ ଉଙ୍ଗା ବୋହି କରି ତାଙ୍କ ସିଂହଦ୍ୱାରଯାଏ ଆସିବେ, ତେବେ ମୁଁ ତାଙ୍କୁ ବାହା ହେବି । ରଜାଙ୍କର ତ ସହଜେ ରାଣୀ ନାହାନ୍ତି, ରଜା ଜାଣିବାକୁ ରାଣୀ ତୋଡ଼ଏ ବରଷ ହେଲା ଶୂନ୍ୟ ପାଇଛନ୍ତି । ଫେର ଆଉ ଗୋଟିଏ କଥା—ଶୃଙ୍ଖଳରେ କାଠ ବେଳୁଅଳରେ ଉଙ୍ଗା କିମିତି ଚଳିବ ? ଏ କଥା ଅସମ୍ଭବ । ରଜା ଯା କରି ପାରିବେ ନାହିଁ ବୋଲି ନାସ୍ତି କଲେ । ଫେର ମନ୍ତ୍ରୀଙ୍କ ହାତରେ ବୋହୂ ଖବର ଦେଲା ଯେବେ ମୁଁ ଆମ ସିଂହଦୁଆରୁ ଶୃଙ୍ଖଳରେ କାଠ ବେଳୁଅଳ ମାରି ଉଙ୍ଗା ବୋହି ରଜାଙ୍କ ସିଂହଦୁଆରଯାଏ ନେବି, ତେବେ ରଜା ତାଙ୍କ ମୁଲକରୁ ଅଧେ ମତେ ଛାଡ଼ ଦେବେ ବୋଲି ଜବାବ୍ କରନ୍ତୁ । ରଜା ମନେ ମନେ ବିଚାରିଲେ, ଏ ଅପସନ୍ଦ କଥା ସତେ ହବ ଯେ, ସେ ମୋଠଉଁ ଅଧେ ମୁଲକ ନବ ? ଯା ବିଚାରି ରଜା ଏ କଥାରେ ସମ୍ମତ ହେଲେ । ତହିଁ ଆର ଦିନ ରଜାଙ୍କ ସିଂହଦୁଆରୁ ରଜାପୁଅ ସିଂହଦୁଆରଯାଏ ଟେସବାଡ଼ ପଡ଼ିଲା, ତଳେ ପଠା ବିଛୁଣି ହେଲା, ଦୋ'ପଖରେ ଦଶ ଦଶ ହାତ ଛଡ଼ାରେ କାଠ ଖମ୍ବ ପୋତା ଗଲା, ପଠାରେ ବାଡ଼ ଦିଆଗଲା । ଉପରେ ବିରି, ସୋରିଷ, କୋଳଥ ଫେଣି, ଛ ସାତ ହାତ ଉଚରେ ଗଦା ହେଲା । ରଜାବୋହୂ ମଙ୍ଗରେ ବସିଲା, ରାଣୀ

ମଝିରେ ବସିଲେ, ରଜାପୁଅ ଭାତ ଧରିଲା । ତାଙ୍କ ଭଗ୍ନବୋଇଁଲେ ହେଲାରୁ ଭାତ ମାରି ଦେଲାରୁ ବାଡ଼ି କୋଳଥ ଫେଣି ଉପରେ ତାଙ୍କ ସତ୍ତଭଜନା ଖସିଯାଇ ରଜାଙ୍କ ଫୁନ୍ଦଦରଜାରେ ଲାଗିଲା । ରଜା ଏହା ଦେଖି ଛାଟିଆ ହେଲେ । ରାଇଜରୁ ଅଧେ ଯିବ, ଏହା ତ ସତ୍ୟ କରିଛନ୍ତି, ଆଉ କହିବେ କଣ ? ରଜାଙ୍କ ବୁଦ୍ଧି ହଜିଲା । ପଛକୁ ବୋହୂ ରଜାଙ୍କୁ ପଚାରିଲେ, ଏ ମଝିରେ କିଏ ବସିଛନ୍ତି ? ରଜା ଦୋଦୋଟାନ୍ତା କଲେ, ବାହାରିଲେ ରାଣୀଙ୍କ ତ ମୁଁ ଶୂଳି ଦେଇଛି, ଏ ରାଣୀ ନୁହେ । ସେଥିରୁ ବୋହୂ କହିଲା, ତୁମେ ରାଣୀଙ୍କି ଯେଉଁ କଥା ପଚାରିଥିଲ, ଯେବେ ସେ କଥାର ଉତ୍ତର ପାଇବ, ତେବେ ରାଣୀଙ୍କ ରଖିବଟି ? ରଜାଙ୍କ ପୂର୍ବକଥା ସବୁ ମନେ ପଡ଼ିଲା, ରାଣୀଙ୍କି ସୁମରି କେତେ କାନ୍ଦିଲେ, ଆଉ କିଛୁ ଉତ୍ତର ଦେଲେ ନାହିଁ; ତୁନି ହୋଇ ରହିଲେ । ପଛକୁ ବୋହୂ କହିଲା 'ମଣିମା ! ଶୁଣ—ଏକରେ ଏକାବନ, ଦୁଇରେ ଦ୍ଵିତୀୟାଚନ୍ଦ୍ର, ତିନିରେ ତ୍ରିବେଣୀ ଘାଟ, ଚାରିରେ ଚତୁର୍ଦ୍ଧା ମୂରତି, ପାଞ୍ଚରେ ପଞ୍ଚପାଣ୍ଡବ, ଛରେ ଛଡ଼ଅଇବ, ସାତରେ ସପ୍ତଫେଣୀ ନାଗ, ଆଠରେ ଅଷ୍ଟବଜ୍ର ଋଷି, ନଅରେ ନବଗ୍ରହ, ଦଶରେ ଦଶଅବତାର, ଏଗାରରେ ଅଗ୍ନିଦେବତା, ବାରରେ ବାମନମୂରତି, ଶୁଣ ହେ ରାଜା ନୃପତି, ମୁଁ ତୁମ ବୋହୂ ପଦ୍ମାବତୀ—ଆଗ ମଙ୍ଗରେ ତୁମ ପୁଅ, ମଝିରେ ତୁମ ରାଣୀ' । ଏହା ଶୁଣି ରଜା ଆନନ୍ଦରେ ଭାସି ଗଲେ, ସମସ୍ତଙ୍କୁ କୁଣ୍ଢେଇ କେତେ କାନ୍ଦିଲେ । ପୁଅ ବୋହୂ ନେଇ ସନ୍ତୋଷେ ବରଷାଏ ରାଇଜ କଲେ । ରାଇଜ ଲୋକଙ୍କୁ ଖିରି, ପିଠା, ପାଟ, ପୀତାମ୍ବର ଶାଢ଼ୀ ବାଣ୍ଟିଲେ । ମୁଁ ଗଲି ଯେ ମତେ କଟକଠାରୁ ପୁରୁଷୋତ୍ତମ ପର୍ଯ୍ୟନ୍ତ ଖଣ୍ଡେ ଲୁଗା ଦେଇଥିଲେ । ମୁଁ ପିନ୍ଧିବାବେଳକୁ କାନ୍ଧକୁ ପାଇଲା ନାହିଁ ।

ମୋ କଥାଟି ସରିଲା, ଫୁଲ ଗଛଟି ମଲା । * * *

# ଦୁଇ ସଙ୍ଗାତ

ଏକ ଦେଶରେ ରଜାପୁଅ ମନ୍ତ୍ରିପୁଅ ଦ'ସଙ୍ଗାତ ଥାଆନ୍ତି । ଦ'ସଙ୍ଗାତ ଦିନେ ବାହାରିଲେ ବିଦେଶ ଯିବା । ଘୋଡ଼ାଶାଳରୁ ଗୋଟିଏ ଗୋଟିଏ ପକ୍ଷିରାଜ ଘୋଡ଼ା ବାଛି ପାଗ ପଟୁକା ଗୁର ହତିଆର ବାନ୍ଧି ବାହାରିଲେ । ଯାଉଁ ଯାଉଁ ବାଟରେ ଗୋଟାଏ ଘୋର ବଣ ପଡ଼ିଲା । ରଜାପୁଅକୁ ଶୋଷ କଲା, ଶୋଷରେ ତୋଣ୍ଟି ଶୁଖିଯାଉଥାଏ, ଏକେ ସୁକୁମାର ଜୀବନ, ତା ଉପରେ ଉଦୁଉଦିଆ ଖରା; ରଜାପୁଅର ଆଉ ଖୋଜେ ଆଗକୁ ଯିବାର ସାମର୍ଥ୍ୟ ନାହିଁ । ପାଖରେ ଅଖରେ କେଉଁଠି ପାଣି ନାହିଁ । ମନ୍ତ୍ରିପୁଅ ଗୋଟାଏ ଡେଙ୍ଗା ଗଛ ଉପରେ ଚଢ଼ି ଚାରିଆଡ଼କୁ ଅନାଷା କଲା । ଦେଖିଲା, ବହୁତ ଦୂରରେ ଦଲ ବଗ ଉଡୁଛନ୍ତି । ଦଗ ବାର ଧର ପକ୍ଷିରାଜ ଘୋଡ଼ାରେ ଚଢ଼ିଲା, ରଜାପୁଅକୁ କହିଗଲା, 'ତୁମେ ଥାଅ, ମୁଁ ଏହିକ୍ଷଣି ପାଣି ଆଣି ଦେବି' । ଚାହୁଁ ଚାହୁଁ ମୁହୂର୍ତ୍ତିକେ ଘୋଡ଼ା ଯାଇଁ ଗୋଟିଏ ପୋଖରୀକୂଳରେ ପହଞ୍ଚିଲା । ଉତ୍ତମ ସୁନ୍ଦର ପୋଖରୀଟିଏ, ପୋଖରୀରେ ଗୋଟିଏ ତୁଠ, ଶଙ୍ଖମଲମଲ ପାହାଚ, ସେଠେଇଁ ଜନପ୍ରାଣୀର ଶବ୍ଦ ନାହିଁ । ମନ୍ତ୍ରିପୁଅ ପୋଖରୀରୁ ପେଟେ ପାଣି ପିଇଲା, ପାଣି ଦୁଧ ପରି ସୁଆଦ ଲାଗିଲା । ପୋଖରୀ ପାହାଚ ଉପରେ ଗୋଟିଏ ଦିବ୍ୟ ସୁନ୍ଦର ସ୍ତ୍ରୀର ରୂପଟିଏ ପଥରରେ ଲେଖା ହୋଇଛି । ମନ୍ତ୍ରିପୁଅ ମନେ ମନେ ବିଚାରିଲା, କାଲେ ସଙ୍ଗାତ କହିବେ, ଏ ସୁଆଦିଆ ପାଣି ଯେଉଁ ପୋଖରୀରୁ ଆଣିଲ, ସେ ପୋଖରୀ ମୁଁ ଦେଖିବି । ଯଦି କହି ଯେବେ ଏ ପୋଖରୀକୂଳକୁ ଆସନ୍ତି, ଏ ରୂପକୁ ଦେଖି କାଳେ କହିବେ ଯେ ଏ ସ୍ତିରୀକୁ ମୁଁ ବିଭା ହେଲେ ଯିବି ।

ତାହାହେଲେ ବଡ଼ ବ୍ୟସ୍ତ କଥା ହେବ । ସ୍ତ୍ରୀ ବସ୍ତ୍ରର ସେ ପଥର ରୂପରେ ଅଚ୍ଛା କର ମେଞ୍ଚାଏ ପଙ୍କ ବୋଳି ଦେଲା । ଯେଉଁ ପାଣି ମନ୍ଦାକ ନେଇଥିଲା, ସେଥିରେ ପଙ୍କ ଗୋଳି ରଜାପୁଅ ପାଖକୁ ନେଇଗଲା । ରଜାପୁଅ ପାଣି ମନ୍ଦାକ ପିଇଲା, ଭାରି ସୁଆଦଆ ଲାଗିଲା । ସଙ୍ଗାତକୁ କହିଲା, ଚାଲ ଏ ପୋଖରୀକୂଳକୁ ଯିବା । ସଙ୍ଗାତ କେତେ ବାହାନା ଫାନ୍ଦ ରଜାପୁଅ କଥାକୁ ଭାଙ୍ଗିଲା, କିନ୍ତୁ ରଜାପୁର ଏକା ଜିଦ ଧଇଲା । ପଛକୁ ଦିହିଙ୍କ ଦିହେଁ ଘୋଡ଼ା ଚଢ଼ି ସେ ପୋଖରୀକୂଳକୁ ଗଲେ । ପୋଖରୀକୂଳ କଦମ୍ବଗଛମୂଳେ ଘୋଡ଼ା ଦିହିଙ୍କି ବାନ୍ଧିଲେ । ରଜାପୁଅ ପୋଖରୀତୁଠରୁ ପେଟେ ପାଣି ପିଇଲା, ପିଇ ସାରି ପାହାଚ ଉପରକୁ ଚାହିଁଲା ବେଳକୁ ମେଞ୍ଚାଏ କାଦୁଅ ମରଚ୍ଛି । ମନ୍ତ୍ରିପୁଅକୁ ପଚାରିଲା, ଏ କଣ ? ମନ୍ତ୍ରିପୁଅ କହିଲା, ତୁଠରେ ମାଇପେ ଗାଧୋଇ ସାରି ଦୁତିଆ ଓଷା ପୂଜା କରିଛନ୍ତି । ରଜାପୁଅର ଏକା ଜିଗର, ଚାରି ଅଞ୍ଜୁଳା ପାଣି ଫୋପାଡ଼ି ଧୋଇଲା ବେଳକୁ ଉତ୍ତମ ସୁନ୍ଦର ସ୍ତ୍ରୀଟି ରୂପଟିଏ ଦିଶିଲା । ରଜାପୁଅ ସେ ରୂପକୁ ଦେଖି କହିଲା, ଏ ସ୍ତ୍ରୀକୁ ଆଣି ମୋତେ ବିଭା ଦେଲେ ମୁଁ ଏଠଉଁ ଯିବି । ମନ୍ତ୍ରିପୁଅକୁ ବଡ଼ ଭାବନାଣି ପଡ଼ିଲା । ସନ୍ଧ୍ୟା ବୁଡ଼ିଲାରୁ ଦି'ଘୋଡ଼ାଙ୍କୁ ସେ କଦମ୍ବଗଛ-ମୂଳେ ବାନ୍ଧି ଦି'ସଙ୍ଗାତଯାକ ଗଛରେ ଚଢ଼ିଲେ । ନିର୍ଜନ ଥାନ, ନିଶା ଗରଜିଲା ବେଳକୁ ସେ ପୋଖରୀରୁ ଏକ ଅହିରାଜ ସାପ ବାହାରିଲା । ମୁଣ୍ଡରେ ଗୋଟିଏ ମଣି ଜଳୁଛି, ଅଡ଼ ଦୀର୍ଘରେ କୋଶେ ବାଟ ଆଲୁଅ ହେଉଛି । ସାପ ସେ ମଣିଟିକୁ ପୋଖରୀତୁଠରେ ରଖିଦେଇ ଚରିବାକୁ ଗଲା । ରଜାପୁଅ ମନ୍ତ୍ରିପୁଅକୁ କହିଲା, 'ସଙ୍ଗାତ ! ମୁଁ ଯାଉଛି, ସେ ମଣିକୁ ଆଣିବି । ମଣିଟିକୁ ଧଇଲା କ୍ଷଣି ସାପ ଯେତେ-ବେଳେ ମୋତେ ଖାଇବାକୁ ଗୋଡ଼େଇବ, ତୁମେ ସେତିକିବେଳେ ଖଣ୍ଡାରେ ସେ ସାପକୁ ହାଣି ଦେବ' । ଅହିରାଜ ସାପ ଆସି ଆଗ କରି

ଘୋଡ଼ା ଦଉଡ଼ୁଙ୍କୁ ଗିଳିଲା । ଚରୁ ଚରୁ ଖଣ୍ଡେ ଦୂରକୁ ବାହାରି ଗଲା । ରଜାପୁଅ ମନ୍ତ୍ରୀପୁଅ ଦୁହେଁ ଗଛରୁ ଓହ୍ଲାଇଲେ । ରଜାପୁଅ ସେ ମଣିଟିକି ଅପଣା ପାଗ ଭିତରେ ଗୁଡ଼େଇଲା ବେଳକୁ ସାପ କୁଅଡ଼େ ଥିଲା, ରଜାପୁଅ ଉପରକୁ ଚମକି ଅସିଲା । ସେତିକିବେଳକୁ ମନ୍ତ୍ରୀପୁଅ ଖୋଳରୁ ଖଣ୍ଡା ବାହାରି କରି ଠିକ କରି ରଖିଥିଲା, ସାପ ବେକରେ ଚୋଟେ ପକେଇଲା । ସାପ ମଲା । ରଜାପୁଅ ମନ୍ତ୍ରୀପୁଅ ସେ ମଣିକି ଧରି ପାଣିରେ ପଶିଲେ । ଯହୁଁ ଯହୁଁ ପାଣିରେ ପଶୁ ଥାଆନ୍ତି, ପାଣି ଅଡ଼େଇ ହୋଇ ଯାଉଥାଏ । ପୋଖରୀ ଭିତରେ ବେଢ଼ିଲା ବେଳକୁ ଭୁବନ ସୁନ୍ଦର ନଅର ହୋଇଛି, ପଦାରେ କେହି ନାହିଁ । ନଅର ଭିତରେ ଗୋଟିଏ ଦିବ୍ୟସୁନ୍ଦର ସ୍ତ୍ରୀଟି ପଲଙ୍କରେ ଶୋଇଛି । ସେ ଦି' ସଙ୍ଗାତଙ୍କୁ ଦେଖିଲା କ୍ଷଣି କହିଲା, 'ଅହା ! କାହିଁକି ଅଇଲ ? ଏହିକ୍ଷଣି ନାଗରଜା ଅଇଲେ ଗିଳି ପକେଇବ' । ମନ୍ତ୍ରୀପୁଅ ସବୁ କଥା କହିଲାରୁ ସେ ଅପଣା କଥାଯାକ ତାଙ୍କ ଅଗରେ କହିଲା । କହିଲା, 'ଏ ମୁଲକ ନାଗରଜାର ମୁଲକ । ମୁଁ ନାଗରଜାର ଝିଅ । ନିତି ନାଗରଜା ଯାହା ଅଣି ଦିଏ, ମୁଁ ଖାଏଁ । ଅଉ ପଦାକୁ ବାହାରେ ନାହିଁ । ଏକା ଗାଧୋଇବା ବେଳକୁ ମନପବନ ଡଙ୍ଗାରେ ପୋଖରୀତୁଠକୁ ଯାଏଁ । ଗାଧୋଇ ପାଧୋଇ ସେହି ଡଙ୍ଗାରେ ନଅରକୁ ଫେରି ଅସେ । ମୁଁ ସେ ରୂପକୁ ତୁଠ ପଥର ଉପରେ ଲେଖିଥିଲି । ସତ୍ୟ କରିଥିଲି, ଯେ ଏ ରୂପକୁ ଦେଖି ମୋ ପାଖକୁ ଅସିବ, ମୁଁ ତାକୁ ବାହା ହେବି' । ରଜାପୁଅ ମନ୍ତ୍ରୀପୁଅକୁ କହିଲା, 'ସଙ୍ଗାତ' ଏ ସ୍ତ୍ରୀଟିକି ଦିହେଁଯାକ ପାଇଲେ, ଯାକୁ ଦିହେଁଯାକ ବାହା ହେବା' । ମନ୍ତ୍ରୀପୁଅ ହରପ୍ରୋପ ନାହିଁ କଲା । ରଜାପୁଅ ବାହା ହେବାର ଠିକ ହେଲା । ମନ୍ତ୍ରୀପୁଅ କହିଲା, 'ସଙ୍ଗାତ, ତୁମେ ଏଠେଇଁ ଥାଅ । ମୁଁ ଅମ ମୁଲକକୁ ଯାଇ ତୁମ ବାପ ରଜାଙ୍କୁ ଜଣା କରି ଯାନ, ବାହନ,

ଚତୁରଙ୍ଗ ବଳ ସାଙ୍ଗରେ ଘେନି ଆସିବ, ବାଘଘର ହବ । ମନ୍ତ୍ରୀପୁଅ ହାତରେ ମଣିଟିକୁ ଧରିଲା, ପାଣିରେ ବାଟ ଫିଟିଗଲା । ଏଣୁ ବାପବଳ୍କୁ ଅସି ଅପଣା ମୁଲକକୁ ଗଲା । ମନ୍ତ୍ରୀପୁଅ ସଙ୍ଗରେ ମଣିଟି ଥାଏ । ଏଣେ ନିତି ସେ କନ୍ୟାଟି ମନପବନ ଡଙ୍ଗାରେ ଚଢ଼ି ପୋଖରୀତୁଠକୁ ଆସେ, ଗାଧୋଇ ସାରି ଫେରି ପୋଖରୀ ଭିତରକୁ ଯାଏ । ସେ ଦେଶର ରଜା ଆସିଥିଲେ ପାରିଧିକି । ଦିନେ ସେ କନ୍ୟାକୁ ପୋଖରୀ-ତୁଠରେ ଦେଖିଲେ । ପାଖକୁ ଗଲାବେଳକୁ କନ୍ୟା ମନପବନ ଡଙ୍ଗାରେ ଚଢ଼ି ପଳେଇଲା । ଇମିତି ନିତି ଯାନ୍ତି, ନିତି ସେ କନ୍ୟା ପଳାଏ । ରଜା ତାଙ୍କ ମୁଲକର ୧୨୦୦ ବଢ଼େଇଙ୍କି ଡକାଇଲେ । କହିଲେ, 'ଯେବେ କାଲି ସକାଳକୁ ମନପବନ ଡଙ୍ଗା ତିଆରି କରି ଆଣି ଦବ, ତେବେ ତୁମ ମୁଣ୍ଡ ରହିବ; ନଇଲେ କାଲି ସକାଳୁ ସବଂଶ ମୁଣ୍ଡକାଟ ହେବ' । ଗୋଟିଏ ବୁଢ଼ା ବଢ଼େଇ ଅତି ବ୍ୟସ୍ତ ହୋଇ ଗୋଟିଏ କଦମ୍ବଗଛମୂଳରେ ଶୋଇଲା । ରାତିଯାକ ନିଦ ମାଡ଼ିବାକୁ ନାହିଁ । ସେ ଗଛରେ ଫୁଲଶାଗୁଣାଟିଏ ବସା କରି ଥାଏ, ରାତିକି ବସାକୁ ଫେରି ଆସିଲା ବେଳକୁ ଛୁଆଯାକ କେଁ କଟର ହେଲେ ଖାଇବେ ବୋଲି । ଫୁଲଶାଗୁଣା ପିଲାଙ୍କୁ ବୋଧ ଦେଇ କହିଲା, 'ଅଜ ଯାହା ଅଣିଛି ଖାଇ ଶୁଅ, କାଲିକି ୧୨୦୦ ବଢ଼େଇ ସବଂଶେ ହାଣ ହେବେ, କାଲି ଯେତେ ଇଚ୍ଛା ମନବୋଧ କରି ଖାଇବ । ସତେ କଣ ବଢ଼େଇ ମନପବନ ଡଙ୍ଗା ତିଆରି କରିବେ ଯେ ହାଣରୁ ବର୍ତ୍ତିବେ ? ଶାଗୁଣାଛୁଆ ଜଗର କରି ମାକୁ ପଚାରିଲେ, 'କେଉଁ ଗଛରେ ଭଲା ସେ ଡଙ୍ଗା ତିଆରି ହେବ' ? ମା କହିଲା, 'ଅମେ ଯେଉଁ ଗଛରେ ଅଛୁଁ, ସେଇ ଗଛରେ ମନପବନ ଡଙ୍ଗା ତିଆରି ହୁଅନ୍ତା' । ବୁଢ଼ା ବଢ଼େଇ ଯା ଶୁଣି ଭାରି ଖୁସି ହେଲା । ଅଉ ବଢ଼େଇଯାକଙ୍କୁ ଉଠାଇଲା । ସକାଳେ ସେ ଗଛକୁ

ଆଣି ମନପବନ ଡଙ୍ଗା ତିଆରି କରି ରଜାଙ୍କୁ ଭେଟି ଦେଲେ । ରଜା ସେ ଡଙ୍ଗାରେ ଚଢ଼ି କହିଲେ, 'ମନପବନ ଡଙ୍ଗା ରେ ! ସେ କନ୍ୟା ଯେଉଁଠି ଥିବ ମତେ ନବୁ ।' ମନପବନ ଡଙ୍ଗା ଗଲା-ବେଳକୁ କନ୍ୟା ପୋଖରୀକୂଳରେ ଗାଧୋଉଥିଲା । ରଜା ସେ କନ୍ୟାକୁ ନେଇ ଆସିଲେ । ମନ୍ତ୍ରିପୁଅ ତ ଆଗରୁ ମଣି ନେଇ ଯାଇଛି, ଫେରି ନାହିଁ । କନ୍ୟା ତ ମନପବନ ଡଙ୍ଗାରେ ବସି ଗାଧୋଇବାକୁ ଯାଇଛି । ସେ ରହିଲା ସେଇ ଆଡ଼େ । ରଜାପୁଅ ପୋଖରୀ ଭିତରେ ନଅରରେ ଏକୁଟିଆ ବସିଛି । ମଣି ଥିଲେ ସିନା ପଦାକୁ ଯାଆନ୍ତା ! ନଅରରେ ବଡ ଭାବନାରେ ଥାଏ । ଦିନାକେତେ ଗଲାରୁ ମନ୍ତ୍ରିପୁଅ ଯାନ ବାହାନ ନେଇ ପୋଖରୀକୂଳରେ ଆସି ପହଞ୍ଚିଲା । ପୋଖରୀ-କୂଳରେ ମଣିଷଯାକ ରଖି ମଣିକି ଧରି ପାଣିରେ ପଶିଲା । ନଅର ଭିତରେ ଦେଖିଲାବେଳକୁ ରଜାପୁଅ ଏକୁଟିଆ ଅଛି, କନ୍ୟାଟି ନାହିଁ । କନ୍ୟାକୁ ଖୋଜିବାକୁ ଅସିଲା । ରଜାପୁଅକୁ କହିଲା, 'ହଙ୍ଗାତ ! ତୁମେ ଥାଅ, ମୁଁ କନ୍ୟାକୁ ନେଇ ଆସିବି, ତୁମେ ଭାବନା କରିବ ନାହିଁ । ମୁଁ ଶୀଘ୍ରେ ଫେରି ଆସିବି' । ଏହା କହି ରଜାପୁଅକୁ ନଅରରେ ଛାଡ଼ି କନ୍ୟା ଅନ୍ୱେଷାରେ ଗଲା । ପୋଖରୀକୂଳରେ ଯେତେକ ମଣିଷ ଥିଲେ, ତାଙ୍କୁ ଆପଣା ମୁଲକକୁ ବିଦା କରି ଦେଲା । ସବୁ ଦେଶରେ ବୁଲୁଥାଏ, କେଉଁ ରଜା ନୂଆ ବାହା ହେଉଛି । ପଛକୁ ଏ କନ୍ୟାକୁ ଯେଉଁ ରଜା ନେଇଥିଲେ, ସେ ଦେଶରେ ଏକ ମାଲୁଣୀ ଘରେ ପହଞ୍ଚିଲା । ମାଲୁଣୀ କହିଲା, 'ଆମ ଦେଶ ରଜା ଏକ ପୋଖରୀରୁ କନ୍ୟାଟିଏ ଆଣିଛନ୍ତି, ସେ କନ୍ୟାର ବାର ବରଷ ତପସ୍ୟା ପୂରିଲେ ତାକୁ ବିଭା ହେବେ । ତପସ୍ୟା ପୂରିବାଯାଏ କନ୍ୟା ରହିବାକୁ ଅଲଗା ନଅର ତୋଳି ଦେଇଛନ୍ତି, କନ୍ୟା ସେଠାରେ ଅଛି । ମନ୍ତ୍ରିପୁଅ ଏହା ଶୁଣି ରଜାଙ୍କ ପାଖରେ

କହିଲା,'ମୁଁ ଗୁଣକର କରିବାକୁ ଆସିଛି'। ରଜା ପଚାରିଲେ,'କି ଗୁଣକର କରିବ'? ମନ୍ତ୍ରିପୁଅ କହିଲା, 'ମୁଁ ମଣିମାଙ୍କ ନଅର ରାତିରେ ପହରା କରିବି, ରାତିଯାକ ମୋର ପଲକ ପଡ଼ିବ ନାହିଁ'। ରଜା ହୁକୁମ ଦେଲେ, ମନ୍ତ୍ରିପୁଅ ଯାଇ ନୂଆ ନଅରରେ ପହରା ଦେଲା। ଅଧରାତି ହେଲା, ଯାଇ କନ୍ୟା ପାଖରେ ପହଞ୍ଚିଲା। କନ୍ୟା ମନ୍ତ୍ରିପୁଅକୁ ଚିହ୍ନିଲା। କିମିତି ଏଠଙ୍କ ପଳେଇବେ, ଦୁହେଁଯାକ ଏଇ ବିଚାର କଲେ। ରଜା ତାଙ୍କ ମନପବନ ଡଙ୍ଗାକୁ ଯେଉଁଠି ରଖିଥିଲେ, ତାକୁ ଚୁନ କର ଖଞ୍ଜରେ ଆଣି କନ୍ୟାକୁ ସେଥିରେ ବସେଇ ଆସି ପୋଖରୀକୂଳରେ ପହଞ୍ଚିଲେ। ମନ୍ତ୍ରିପୁଅ ପାଖରେ ତ ମଣିଟି ଥାଏ। ମଣିଟି ଧର ଦୁହେଁଯାକ ରଜାପୁଅ ପାଖରେ ପହଞ୍ଚିଲେ। ସେ ନଅର ଭିତରେ ଯେଉଁଠି ଯାହା ଧନ ଦରବ ଥିଲା, ସବୁ ଲୁଣ୍ଠେଇ ପୁଣ୍ଠେଇ ନେଇ ଅପଣା ଦେଶକୁ ବାହାରିଲେ। ବାଟରେ ଯାଉଁ ଯାଉଁ ଗୋଟିଏ ମଠ ପଡ଼ିଲା। ସେ ମଠ ମହନ୍ତ ମର ଯାଇଥାଅନ୍ତି। ତାଙ୍କର ଦି' ଚେଲା। ଚେଲାଙ୍କ ଭିତରେ କଳିଆ ଲାଗିଛି, ମହନ୍ତଙ୍କ କଠଉ, ଝୁଲି, ବେତ କିଏ ନେବ? ଦି' ଚେଲା ଯାକ ରଜାପୁଅ ମନ୍ତ୍ରିପୁଅଙ୍କୁ ଭଲଲୋକ ମାନିଲେ। ଏ ପଚାରିଲେ, 'ଏଥିପାଇଁ କିଆଁ ଏତେ କଳିଆ ଲାଗିଛି'? ଚେଲାଏ କହିଲେ, 'ଏ କଠଉକୁ ପିନ୍ଧିଲେ ବ୍ରହ୍ମାଣ୍ଡଯାକ ଦଣ୍ଡକେ ବୁଲି ଆସିବ, ଏ ଝୁଲିମୁଣିକି ଝାଡ଼ି ଦେଲେ ଲକ୍ଷେ ଲୋକଙ୍କର ଖାଇବା ସାମଗ୍ରୀ ଗଳି ପଡ଼ିବ, ଏ ବେତ ଗୁର ପଚକୁ ଧୋଇ ରଖିଦେଲେ ଏଥିରୁ ଶହ ପାଇକ ଦଣ୍ଡକେ ଜନ୍ମ ହୋଇ ପଡ଼ିବେ'। ଏହା ଶୁଣି ମନ୍ତ୍ରିପୁଅ କହିଲା, 'ତୁମେ ଦୁହେଁଯାକ ଦୌଡ଼, ଯେଉଁ ଜଣକ ଆଗେ କୋଶେ ବାଟ ଦଉଡ଼ି ଯିବ, ସେ ଏ ସବୁ ନେବ'। ଦୁହେଁଯାକ ମାଲୁ ପର୍ଯ୍ୟନ୍ତ ଦଉଡ଼ିଲେ। ଏଣେ ରଜାପୁଅ ମନ୍ତ୍ରିପୁଅ ସେ କଠଉ, ଝୁଲି, ବେତ

ନେଇ ଛଅଁ ମାର ଦେଲେ । ଏ କଠରୁ ହେବକା ନେଇ ରଜାପୁଅ
ବାଟରେ ମନ୍ତ୍ରିପୁଅକୁ କହିଲା, 'ସଙ୍ଗାତ ! ଆମର ତ ସଙ୍ଗରେ ସବୁ
ଅଛୁ, ଏଇଠି ବାସ ହୋଇ ଘରକୁ ଯିବା' । ବେତକୁ ପର ଧୋଇ
ରଖି ଦେଲାରୁ ସେଥିରୁ ୩୨ ପାଟକ ଜନ୍ମ ହେଲେ । ଫୁଲମୁଣିକ
ଝାଡ଼ି ଦେବାରୁ ୩୨ ପାଟକଯାକ ଖାଇ ଭର ବୋଧ ହେଲେ ।
ସେଠାରୁ ଯାଇ ଖଣ୍ଡେ ଦୂରରେ ଗୋଟିଏ ପୋଖରୀ ଦେଖିଲେ, ତା
କୂଳରେ ଦେଉଳଟିଏ ଅଛି, ସେଠେଇଁ ବେଳ ବୁଡ଼ିଗଲା, ସେଠେଇଁ
ରହିଲେ । ଦୈବଯୋଗକୁ ସେ ଦିନ ସେହି ପୋଖରୀରେ ବାରୁଣୀ
ଯୋଗ ପଡ଼ିଥାଏ । ରାତିରେ ବହୁତ ଲୋକ ସ୍ନାନ କରିବାକୁ
ଆସିଲେ । ରଜାପୁଅ, କନ୍ୟା ଦୁହେଁଯାକ ଶୋଇ ପଡ଼ିଲେ । ମନ୍ତ୍ରିପୁଅ
ବଡ଼ ଚତୁର । ରାତିଯାକ ଚେଇଁଥାଏ, କଡ଼ ମାଡ଼ି ପଡ଼ିଥାଏ, ଯେ
ଯାହା ପୋଖରୀତୁଠରେ କଥାବାର୍ତ୍ତା ହେଉଥାନ୍ତି, ଶୁଣୁଥାଏ ।
ପହିଲେ ଦେବଲୋକମାନେ ସେ ପୋଖରୀରେ ବୁଡ଼ ପକେଇବାକୁ
ଆସିଲେ । ଗାଧୋଇ ସାରି ଗଲାବେଳେ ଜଣେ କହିଲା, 'ଦେଖିଲଣି,
ଏଠେଇଁକି ସୁନ୍ଦର ବର କନ୍ୟା ଯୋଡ଼ିଏ ଶୋଇଛନ୍ତି' । ଆଉ
ଜଣେ କହିଲା, 'ହେଲେ କଣ ହେବ, ଏ ରଜାପୁଅ ନଅରକୁ
ଗଲାବେଳେ ତା ଉପରେ ମେଘନାଦ ପାଚେରି ଭାଙ୍ଗି ପଡ଼ିବ, ଏ ମରି
ଯିବ' । ପହିଲି ଜଣକ କହିଲା, 'ଭଲ, ଏଥିକି କିଛି ଉପାୟ ନାହିଁ' ?
ଆଉ ଜଣକ କହିଲା, 'ଯେବେ କେହି ଲୋକ ଆଗରୁ ସେ ପାଚେରିକି
ଭଙ୍ଗେଇ ଦବ, ତେବେ ଏ ରଜାପୁଅ ବଞ୍ଚିବ । ଏ କଥାକୁ ଯେବେ
କିଏ ପ୍ରକଟ କରିବ, ତେବେ ସେ ପଥର ପାଲଟି ଯିବ' । ଫେର ଘଣ୍ଟାକ
ବାଦ ପିତୃଲୋକେ ସେ ଘାଟକୁ ଗାଧୋଇ ଆସିଲେ । ଗଲାବେଳେ
କଥାବାର୍ତ୍ତା ହୋଇ ଗଲେ, 'ରଜାପୁଅ ପକ୍ଷିରାଜ ଘୋଡ଼ା ଉପରେ
ନଅରକୁ ବାଜେ କଲାବେଳେ ପକ୍ଷିରାଜ ଘୋଡ଼ା ତାକୁ ନେଇ ସମୁଦ୍ରରେ

ମାଡ଼ ଦବ । ଯେବେ କିଏ ଆଗରୁ ସେ ଘୋଡ଼ାକୁ ହଣେଇ ଦବ, ତେବେ ରଜାପୁଅ ବଞ୍ଚିବ । ଏ କଥାକୁ କିଏ ଯେବେ ପ୍ରକଟ କରିବ, ତେବେ ସେ ପଥର ପାଲଟି ଯିବ'। ଆର ପହରକୁ ନାଗଲୋକେ ସେଠିକି ଆସିଲେ । ଗଲାବେଳେ କଥାବାର୍ତ୍ତା ହେଲେ—'ରଜାପୁଅ ଘରେ ପହଞ୍ଚିଲାରୁ ସାବତ ମା ପଠେଇଲେ ସୁନା ଥାଳିରେ ଯେଉଁ ଭାତ ଆଣିବ, ସେଥିରେ ବିଷ ଗୋଳିଥିବ । ରଜାପୁଅ ତାକୁ ଖାଇ ମରିବ । ଯେବେ କିଏ ସେ ଭାତ ଥାଳିକି ଗୋଡ଼େଇ ପକେଇବ, ତେବେ ରଜାପୁଅ ବଞ୍ଚିବ । ଏ କଥାକୁ ଯେ ପ୍ରକଟ କରିବ, ସେ ପଥର ପାଲଟି ଯିବ' । ରାତି ଶେଷ ପହରକୁ ନରଲୋକେ ଗାଧୋଇବାକୁ ଆସିଲେ । ଗଲାବେଳେ କଥାବାର୍ତ୍ତା ହେଲେ, 'ମଦନଶଯ୍ୟା ଦିନ ରାତିରେ ଏ ଦୁହେଁ ପଲଙ୍କରେ ଶୋଇଥିବେ, ଖଟଖୁରାରୁ ଏକ ନାଗ ସାପ ବାହାରି ରଜାପୁଅକୁ ଦଂଶିବ । ଯେବେ କିଏ ରାତିସାରା ଖଟ ପାଖରେ ପହରା ଦେଇ ସେ ସାପ ବାହାରିଲାବେଳେ ସାପକୁ ହାଣି ଦବ, ତେବେ ରଜାପୁଅ ବଞ୍ଚିବ । ଏ କଥାକୁ ଯେ ପ୍ରକଟ କରିବ, ସେ ପଥର ପାଲଟି ଯିବ' । ମନ୍ତ୍ରିପୁଅ ଏ କଥା ସବୁ ଶୁଣିଥାଏ । ସକାଳୁ ଉଠି ରଜାପୁଅକୁ କହିଲା, 'ସଙ୍ଗାତ ! ମୁଁ ଆଗରେ ଯାଇ ରଜାଙ୍କୁ ତୁମ ଆସିବା କଥା ଜଣା କରିବି' । ସିଏ କହି ଆଗରେ ରଜାଙ୍କ ଛାମୁରେ ଆସି ପହଞ୍ଚିଲା । କହିଲା, 'ମଣିମା ! ତୁମ ପୁଅ ବାହା ହୋଇ ଯାନ ବାହନ ନେଇ ଆସୁଛନ୍ତି । ଛାମୁଙ୍କୁ ଖବର ଦେଇଛନ୍ତି, ମେଘନାଦ ପାଚେରିଟା ଭଙ୍ଗା ଯିବ, ପକ୍ଷିରାଜ ଘୋଡ଼ାର ମୁଣ୍ଡ କଟା ହେବ' । ରଜା ବିଭାଘର କଥା ଶୁଣି ଭାରି ଖୁସି ହେଲେ । ରଜାଙ୍କ ହୁକୁମରେ ଦଣ୍ଡକ ଭିତରେ ମେଘନାଦ ପାଚେରି ଭଙ୍ଗା ହେଲା,ପକ୍ଷିରାଜ ଘୋଡ଼ାର ମୁଣ୍ଡ କଟା ହେଲା । ରଜାପୁଅ ଆସି ଘରେ ପହଞ୍ଚିଲାବେଳକୁ ମା ସୁନା ଥାଳିରେ ଭାତ ଦିନା ଆସି ପହଞ୍ଚିଲେ । ମନ୍ତ୍ରିପୁଅ ଜାଗରଥିବ ଥାଏ ।

ରଜାପୁଅକୁ କହିଲା, 'ସଙ୍ଗାତ ! ମୁଁ ତୁମର ଏତେ କାମ କରୁଛି, ମୋର ଗୋଟିଏ କଥା ଆଜ ମାନିବ । ତୁମ ସାବତ ମା ଯେଉଁ ଭାତ ଥାଳିକ ଆଣି ତୁମକୁ ଦେଉଟିବେ, ସେ ଭାତ ଥାଳିକ ତୁମେ ଖାଇବ ନାହିଁ, ପୋତେଇ ପକେଇବ । ମା ପଛକେ ଆଉ ଥାଳିଏ ଭାତ ଆଣି ଦିଅନ୍ତୁ; ତାକୁ ଖାଇବ ।' ରଜାପୁଅ ଏ କଥାରେ ସନମତ ହେଲରୁ ଭାତ ଥାଳିକ ପୋତା ହେଲା । ରାତିରେ ଖିଆପିଆ ସରିଲା, ରଜାପୁଅ ମହୁଣଯ୍ୟାକୁ ବାହାରିଲା । ରଜାପୁଅ କହିଲା, 'ସଙ୍ଗାତ ! ଏଥର ତୁମେ ଘରକୁ ଯାଅ ।' ମନ୍ତ୍ରିପୁଅ କହିଲା, 'ସଙ୍ଗାତ ! ମୁଁ ତୁମ ଦୁହିଙ୍କପାଇଁ ଏତେ ଦୁଃଖ ସହୁଛି । ଆଜ ରାତିରେ ତୁମେ ବର-କନ୍ୟା ମହୁଣଯ୍ୟାରେ ଶୋଇବ, ମୁଁ ଆଜ ରାତିକ ଠିଆ ପହରା ଦେବି, ସକାଳେ ମୋ ମୁହଁ ଦେଖି ମୁଁ ଘରକୁ ଯିବି ।' ମନ୍ତ୍ରିପୁଅ କେତେ ଉପକାର କରୁଛି, ତା କଥା ଭାଙ୍ଗି ଦେଲେ ଚଳିବ ନାହିଁ । ରଜାପୁଅ କହିଲା, 'ହଉ' । ବରକନ୍ୟା ଶୋଇଲେ, ମନ୍ତ୍ରିପୁଅ ଖଣ୍ଡା ହାତରେ ବାନ୍ଧି ସେ ପଲଙ୍କ ପାଖରେ ପହରା ଦେଲା । ବରକନ୍ୟା ଶୋଇ ପଡ଼ିଲେ, ଘୁଙ୍ଗୁଡ଼ି ମାଇଲେ । ଖଟ ଖୁରାରୁ ଏକ ନାଗ ସାପ ବାହାରିଲା । ଯେତେବେଳେ ସାପ ଖଟ ବାଡ଼ ଉପରକୁ ଉଠିଲା, ସେତିକିବେଳେ ମନ୍ତ୍ରିପୁଅ ଖୋଳରୁ ଖଣ୍ଡା ବାହାର କରି ଏକା ଚୋଟକେ ସାପକୁ ଦୁ'ଗଡ଼ କରି ଦେଲା । ହାଣି ଦେଲାବେଳେ ସାପ ଦେହରୁ ଟୋପାଏ ରକତ ଛିଟିକି କନ୍ୟା ଗାଲରେ ପଡ଼ିଲା । ମନ୍ତ୍ରିପୁଅ ମଲା ସାପକୁ ନେଇ ଦାଣ୍ଡରେ ପକେଇ ଦେଲା । ଫେରି ଆସି ମୁଣ୍ଡରୁ ପାଟ ପାଗ ଫିଟେଇ ଖଣ୍ଡାରେ ଗୁଡ଼େଇଲା । ଖଣ୍ଡାକୁ ବଢ଼େଇ ଖଣ୍ଡା ଅଗରେ କନ୍ୟା ଗାଲରୁ ସେ ରକତ ଟୋପାକ ପୋଛୁଥିବା ବେଳକୁ ଖଣ୍ଡା ମୁନ ପାଖ ରଜାପୁଅ ଦେହରେ ଲାଗିଗଲା । ରଜାପୁଅ ଉଠି ବସି ମନ୍ତ୍ରିପୁଅ ଚୁଟି ଧରିକ, କହିଲା, 'ମୁଁ ତ ବେଳସୁଁ କହୁଛି ଦରେଇଁଯାଉ ଏ କନ୍ୟାଟି

ବାଘ ହବା, ଯେତେବେଳେ କଅଁ ନ ମଙ୍ଗିଲ, ଏତେବେଳେ କଅଁ ଏ ଖଟ ଉପରେ ହାମୁଡ଼େଇ ପଡ଼ିଥିଲ ? ଏ କଥା କହିବ ଯେବେ କହ, ନଇଲେ ମୁଁ ଏଇକ୍ଷଣେ ତୁମକୁ ହାଣି ଦେବି, ମୁଁ ନିଜେ ହାଣି ହୋଇ ମରିବି ।' ମନ୍ତ୍ରିପୁଅର ପ୍ରାଣ ଗଲେ ପଛକେ ଯିବ, ସେଥିପାଇଁ କିଛି ହାନି ନ ଥିଲା । କାଳେ ରଜାପୁଅ ଅପେ ହାଣି ହେଇ ମରିବ, ତେବେ ମନ୍ତ୍ରିପୁଅ ଏତେ ଯେ ଶ୍ରମ କରିଛି, ଅକାରଣ ଯିବ । ମନ୍ତ୍ରିପୁଅ ରଜାପୁଅକୁ ଯେତେ ବୁଝାଇଲା, ରଜାପୁଅ ବୁଝିଲା ନାହିଁ; ଏକା ଜିଦ ଧରିଲା, ନ କହିଲେ ନ ଚଳେ । ଅତି ଜଗର କଲରୁ ମନ୍ତ୍ରିପୁଅ କହିଲା, 'ସଙ୍ଗାତ ! ମୁଁ ଯେବେ ଏ କଥା କହିବି, ତେବେ ପଥର ହୋଇଯିବି । ମତେ କଅଁ ଏତେ ବଳଉଛ ?' ରଜାପୁଅ ଏ କଥାକୁ ଅପସନ୍ଦ କଲା, କହିଲା, 'ମଣିଷ କେବେ ପଥର ହେଲାଣି ? ତୁମେ ମତେ ଭଣ୍ଡାଉଛ, ତୁମ ମନରେ ଥିଲା, ମତେ ହାଣି ଏ କନ୍ୟାକୁ ବାଭ ହୁଅନ୍ତ' । ମନ୍ତ୍ରିପୁଅ ଯ୍ହା ଶୁଣି ମନେ ମନେ କଅଁ ହୋଇଗଲା । ପଛକୁ କହିଲା, 'ସଙ୍ଗାତ ! ମତେ ପାସୋରିବ ନାହିଁ । ମୁଁ ପଥର ହେଇଗଲେ ପଥର ଖଣ୍ଡକୁ ତୁମ ଶୋଇବା ବସିବା ଘରେ ରଖି ଦବ । ଯେତେବେଳେ ହେଲେ ଧନ୍ଦେଇଁଯାକ ମୋ ଉପରେ ଟିକିଏ ଦୃଷ୍ଟି ପକଉଥିବ ।' ଯ୍ହା କହି ପୋଖରୀକୂଳରେ ଦେଉଳ ପାଖରେ ଗଛରେ ଯାହା ଯାହା ଶୁଣିଥିଲା, ସବୁ କହିଗଲା । ପହିଲୁ ମେଘନାଦ ସାଗର କଥା କହି ସାରିଲାରୁ ଗୋଡ଼ ଅଣ୍ଟୁ ପର୍ଯ୍ୟନ୍ତ ପଥର ହୋଇ-ଗଲା । ପକ୍ଷିରାଜ ଘୋଡ଼ା କଥା କହିଲାରୁ ଅଣ୍ଟାଯାଏ ପଥର ପାଲଟି ଗଲା । ଭାତ ଆଣି କଥା କହିଲାବେଳକୁ ବେକଯାଏ ପଥର ହେଲା । ସାପ କଥା କହିଲାବେଳକୁ ମୁଣ୍ଡଟି ପଥର ହୋଇଗଲା । ଯ୍ହା ଦେଖି ରଜାପୁଅର ଆଉ ବୁଦ୍ଧି ସୁରିଲା ନାହିଁ । ଯିମିତ ଶୋଇଥିଲା, ସିମିତ ଉଠିଲା । ଏ ପଥରକୁ କାନ୍ଧେଇଲା, ବାବାଜୀ କଠଉ ଯୋଡ଼ିକ ମାଡ଼ିଲା,

ଝିଲ୍ମଣିଟି, ବେତ ଖଣ୍ଡିକ ଧରିକି, ମୁଣ୍ଡ ଉପରେ ଖଣ୍ଡାଟି ଥିଲା, ତାଙ୍କୁ ଧରିକି, ବାହାରିଲେ । କନ୍ୟାକୁ କହିଗଲେ—'ମୁଁ ଯାଉଛି, ସଙ୍ଗାତକୁ ମଣିଷ କରେଇବି, ତେବେ ଘରକୁ ଫେରି ଆସିବି । ଯେବେ ସଙ୍ଗାତକୁ ମଣିଷ କରେଇ ନ ପାରିବି, ତେବେ ସଙ୍ଗାତକୁ ନେଇ ସମୁଦ୍ରରେ ଝାସ ଦେବି' । କନ୍ୟା କେତେ ବୁଝେଇଲେ, ବୁଝିଲ ନାହିଁ । ପଛକୁ କନ୍ୟା ଆପଣା କର୍ମକୁ ଆଦରି କାନ୍ଦ ବୋବେଇ ରହିଲେ । ରଜାପୁଅ ବିଦେଶ ଗଲେ । ସଙ୍ଗାତକୁ ମୁଣ୍ଡେଇ ଏଗାର ବରଷ ବୁଲିଲେ । ପଛକୁ ବାର ବରଷ ପୂରି ନ ଥାଏ, ବନେ ଯାଇ ଏକ କଦମ୍ବଗଛ ମୂଳେ ପହଞ୍ଚିଲେ । ସେ ଗଛରେ ଗୋଟିଏ ଫୁଲଶାଗୁଣା ବସା କରି ଥାଏ । ଛୁଆଗୁଡ଼ିକ ବସାରେ ଛାଡ଼ି ଶାଗୁଣା ବନଯାକ ଅଧାର ଖୋଜି ଯାଏ । ସେ ଦିନ ରଜାପୁଅ ସେ ଗଛମୂଳେ ଶୋଇଛି, ଗଛ ଉପରେ ଶାଗୁଣାଛୁଆଯାକ କେଁ କାଁ ହେଲେ । ଏ ଉଠି ଦେଖିଲା, ଏକ ଅଜଗର ସାପ ଗଛ ଉପରକୁ ଉଠୁଛି, ସେ ଛୁଆଙ୍କୁ ଖାଇବ । ରଜାପୁଅ ସାପକୁ ଦେଖିଲାକ୍ଷଣି ଖୋଳରୁ ଖଣ୍ଡା ବାହାରି କରି ସାପକୁ ଗଡ଼ ଗଡ଼ କରି କାଟିଲେ । ଏଣେ ଫୁଲଶାଗୁଣା ବନଯାକ ବୁଲି ବୁଲି ସନ୍ଧ୍ୟାବେଳକୁ ବସାକୁ ନେଉଟି ଆସିଲା । ଛୁଆଙ୍କୁ ଅଧାର ଦେଲାବେଳକୁ ଛୁଆଯାକ କହିଲେ, 'ମାଲୋ ମା ! ଆମକୁ କଣ ଖାଇବାକୁ ଦଉଛି, ଆମ ଜୀବନ ଆଜି ଯେ ରଖିଛି, ସେ ବାଟୋଇଟି ଗଛମୂଳେ ଶୋଇଛି; ତା କଥା ବୁଝ' । ହେଉଁ ମାକୁ ଦିନର ସବୁ କଥାଯାକ କହିଲେ । ମା ଯାଇ ଗଛମୂଳେ ଦେଖେ, ବାଟୋଇଟି ଶୋଇଛି, ଅଜଗର ସାପ ଖଣ୍ଡ ଖଣ୍ଡ ହୋଇ ପଡ଼ିଛି । ବାଟୋଇକି ଉଠେଇଲା, କହିଲା, 'ତୋ ଉପକାର ମୋ ମନରୁ ଯିବ ନାହିଁ । ତୁ କଣ ବର ମାଗୁଛୁ, ମାଗ ।' ରଜାପୁଅ ଏ ପଥରକୁ ଦେଖେଇଲେ, ସବୁକଥା ଶାଗୁଣାକୁ

କହିଲା । ଶାଗୁଣା କହିଲା, 'ଏ ଗଛମୂଳ ମାଟି ଚକଟି ସେ ପଥର ଦେହରେ ବୋଳି ଦେଇ ପାଣି ଦ' ମାଠିଆ ଢାଳି ଦେ' । ରଜାପୁଅ ସତକୁ ସତ ସେଇଆ କଲା ବେଳକୁ ମନ୍ତ୍ରିପୁଅ ମଣିଷ ହୋଇଗଲା । ନିଦରୁ ଉଠିଲା ଭଳି ଆଖି ମଳି କହିଲା, 'ସଙ୍ଗାତ ! ମୁଁ କେତେ-ଗୁଡ଼ାଏ ଶୋଇ ପଡ଼ିଲି ।' ରଜାପୁଅ ହସି କରି ସବୁ ପଛର କଥା କହିଲା । ଦହେଁଯାକ କୁଣ୍ଢିଆ କୁଣ୍ଢେଇ ହେଲେ, ଘରକୁ ଫେରି ଆସିଲେ । ଘରେ ଆସି ପହଞ୍ଚିଲା ବେଳକୁ ବାର ବରଷ ହୋଇ ଗଲାଣି । ତାଙ୍କୁ ଶୁଧ ହବାକୁ ଉଦ୍ୟମ ଲାଗିଛି । ଦି' ସଙ୍ଗାତ ଆସି ପହଞ୍ଚିଲାରୁ ସମସ୍ତେ ଦେଖି ଆନନ୍ଦ । ରଜାପୁଅ କନ୍ୟାକୁ ନେଇ ଘର ଦୁଆର କଲା । ମୁଁ ଗପ୍ପରୁ କଥା କହିଲି ନାହିଁ ।

# ବଣିଆପୁଅ ରଜାଝିଅ ।

ଗୋଟିଏ ରାଇଜର ରଜା ମନ୍ତ୍ରୀ ଦୁହେଁଯାକ ସଙ୍ଗାତ ହେଲେ । ଦୁହିଙ୍କର ଏକାଦିନେ ଦିଓଟି ଉତ୍ତମ ସୁନ୍ଦର ବାଳୁତ ଜନ୍ମ ହେଲେ । ପନ୍ଦର କୋଡ଼ିଏ ବରଷ ଗଲା, ପୁଅ ଦୁହେଁ ପାଠ ପଢ଼ି ଯୋଗ୍ୟ ହେଲେ । ଏକା ଦିନକେ ଦୁହେଁଯାକ ବାହା ହେଲେ । ପିଲା ଦୁହେଁ ଯାକ ସଙ୍ଗାତ ବସିଲେ, ବିଦେଶ ବାହାରିଲେ । ତାଙ୍କରେ ଦୁହେଁ ଦୁହିଙ୍କ ଭାରିଯାକୁ ନେଲେ । ଗଲାବେଳେ ସତ୍ୟ କରି ଗଲେ, ଯେବେ ଏକା ବାଟରେ ଦୁହିଙ୍କର ପୁଅ ଜନ୍ମ ହେବେ, ତେବେ ଘରକୁ ଫେରି ଆସିବା, ନହେଲେ ଯାହାର ଆଗରେ ପିଲା ହେବ, ସେ ପିଲାଟିକି ବାଟରେ ପକେଇ ଦେଇ ଫେରି ଆସିବା । କେତେ ଦିନ ବୁଲି ବୁଲି ପଛକୁ ଏକ ବନସ୍ତରେ ଘର ତୋଳି ରହିଲେ । ଆଗ କରି ରଜାପୁଅର ଗୋଟିଏ ପୁଅ ହେଲା । ପିଲାଟି ଉତ୍ତମ ସୁନ୍ଦର ପୂନିଅ ଚନ୍ଦ ପରି ଦିଶୁଥାଏ । ରଜାପୁଅ ସତ୍ୟ ତ କରିଛି । କେତେ କାନ୍ଦି ବୋବେଇ ବାଟରେ ଗୋଟିଏ ଗାଛରେ ସେ ପିଲାଟିକି ରଖି ତା ଉପରେ ଗୁଡ଼ାଏ ଡାଳପତ୍ର ଘୋଡ଼େଇ ଦେଇ ଆସିଲେ । ରଜାପୁଅ ପାଗରୁ ଖଣ୍ଡିଏ ମଣି ଫିଟେଇ ଖଣ୍ଡେ କନାରେ ଗୁଡ଼େଇ ସେ ପୁଅ ବେକରେ ବାନ୍ଧି ଦେଇ ଆସିଲା । ପିଲାଟିକି ଛାଡ଼ି ଦି'ସଙ୍ଗାତ ଘରକୁ ଆସିଲେ । ଦଣ୍ଡକ ବାଦ ସେ ପିଲାଟି କୁଆଁ କୁଆଁ ହେଇ କାନ୍ଦିଲା । ସେ ବାଟେ ଗୋଟିଏ ବୁଢ଼ା ବଣିଆ ତା କାମରୁ ଫେରି ଘରକୁ ଆସୁଥିଲା । ବନସ୍ତରେ କଅଁଳା ପିଲା ରଡ଼ି ଶୁଣି ଖୋଜିଲା ବେଳକୁ ଗାଛରେ ଏ ଛୁଆଟିକି ପାଇଲା । ବୁଢ଼ାଟି ଅଣ୍ଟୁକୁଡ଼ା ।

ପିଲାଟିକି ଦେଖିଲାକ୍ଷଣି ତାର ଆଉ ଆନନ୍ଦର ସୀମା ନାହିଁ । ପିଲାଟିକି ଲୁଚେଇ କରି ଆପଣା ଘରକୁ ନେଲା । ଘରଣୀକି କହିଲା, 'ତୁ ମିଛରେ ଦୁଃଖ ପାଇଲୁ ଭଲ ହେଲା, ମୁଁ ଯାଇ ସାଇ ମାଇପଙ୍କୁ ଡାକି ଆଣିଲା ବେଳକୁ ତୁ ଏ ପିଲାଟିକି ଆଗରେ ପକେଇ ଦେଇ ନୁଛୁଁ। ଗଳ୍ପ ପରି ପଢ଼ୁଥିବୁ ।' ସାଇ ମାଇପେ ଆସିଲାବେଳକୁ ପିଲାଟି କୁଆଁ କୁଆଁ ହୋଇ କାନ୍ଦୁଛି । ସମସ୍ତେ ଦେଖି କହିଲେ, 'ବୁଢ଼ା ବଣିଆର ଷାଠିଏ ବରଷରେ ପୁଅ ହେଲା ।' ଏଣେ ବୁଢ଼ା ବଣିଆ ସେ ପିଲାବେକର ମଣିଟିକି ଦେଖିଲା, ସେଥିରେ 'ରଜାବନାଁ' ଲେଖା ଅଛି । ସେ ମଣିଟିକି ଆଣି ଘରଣୀକି ଦେଇ କହିଲା, 'ଯୁକୁ କୁଆଡ଼େ ଫୋପାଡ଼ିବୁ ନାହିଁ ।' କେତେବେଳେ ହେଲେ କାମରେ ଆସିବ । ସମସ୍ତେ ଜାଣିବାକୁ ବଣିଆପୁଅ । ସେ ପୁଅଟି ବଢ଼ିଲା, କାମ ଶିଖିଲା । ଆଉ ବଣିଆଏ ଯେଉଁ କାମ ମାସକେ ଶିଖନ୍ତି, ରଜାପୁଅ ସେ କାମକୁ ଘଣ୍ଟାକେ ଶିଖେ । ଦିନେ ଆଉ ବଣିଆଙ୍କ ସାଙ୍ଗରେ ଏ ଟୋକା ରଜାଙ୍କ ଘରକୁ କାମ କରିବାକୁ ଗଲା । ସମସ୍ତଙ୍କଠୁଁ ବଢ଼ିଆ କାମ କଲା । ମେଲାଣି ହେଲା ବେଳକୁ ସମସ୍ତଙ୍କୁ ତିନି ମେଣ୍ଟ ଖୋରାକ ଦେଲେ । ଏ ଟୋକା ମନେ ମନେ ବିଚାରିଲା, ଏଠେଇଁ ଧୂଆ ମୂଳା ଅଧୂଆ ମୂଳା ଏକା ସମାନ, ଏ ରାଇଜରେ କପା ବଣାକ ଭାଉ ଯାହା, କର୍ପୂର ବଣାକ ଭାଉ ସେଇଆ । ଇମିତି ଅବୁଝା ରଜା ମୂଲକ ଛାଡ଼ି ପଳେଇବା କାମ । ଯା ବିଚାରି ତହିଁ ଆର ଦିନ ସକାଳୁ ଉଠି ମାକୁ ନ କହି ଘରୁ ବାହାରିଗଲା । ମା ବହୁତ ଖୋଜି କରୁଣ ହେଲା । ପଛକୁ ଦିନେ ଦିଦିନ ବାଦ ଆପଣା କର୍ମକୁ ଆଦର କହିଲା । ବିଚାରିଲା, 'କର୍ମେ ନ ଥାଇ ସେବା ଫଳେ, ବିଧାତା ହରଇ ତା ବଳେ ।', ଏଣେ ବଣିଆ ଟୋକା ଯାଉଁ ଯାଉଁ ବାଟରେ ସନ୍ଧ୍ୟା ହେଲା । ସେଠେଇଁ

ଗୋଟିଏ ବରଗଛ ଓ ଗୋଟିଏ ଓସ୍ତଗଛ । ସୁକୁମାର ପିଲ୍ଲା, ଧନଯାଙ୍କ ଗୃଲ ଗୃଲ ଗୋଡ଼ ଥକ ଗଲଣି । ସେ ଗଛମୂଳେ ବସିଲା । ସେ ଗଛ ଉପରେ ଧଓଟି ପକ୍ଷୀ ବରପଦକୁ ଓସ୍ତପଦକୁ ଯେ ଉଡ଼ୁଥାନ୍ତି । ଯୋଡ଼ କର ତଳକୁ ପଡ଼େଇ ଦଉଥାନ୍ତି । ଟୋକା ତାଙ୍କୁ ପଚାରିଲା, 'ହେ ମହାତ୍ମା ! ତୁମେ କଏ ? ଏଠେଇଁ କଣ କରୁଛ ?' ସେ ଦୁହେଁ କହିଲେ, 'ଅମେ ବହିବଧାତା । ପରପୁଅକୁ ପରଝିଅ ଗଣ୍ଠୁଛୁ । କଏ କାହାକୁ ବାହା ହବ, ସେ କଥା ଅମକୁ ଜଣା ।' ଟୋକା ଅପଣା ଗାଁର କେତେ ଲୋକଙ୍କ କଥା ପଚାରିଲା । କଏ କାହାକୁ ବାହା ହବ, ବହିବଧାତା କହିଦେଲେ । ପଛକୁ ଟୋକା ଅପଣା କଥା ପଚାରିଲା । ବହିବଧାତା କହିଲେ, 'ତୁ ଅଜ ରାତରେ ଏକ ରଜାଝିଅକୁ ବାହା ହେବୁ' । ଟୋକା ଯା ଶୁଣି ଅପସନ୍ଦ କଲା । ବହିବଧାତା କହିଲେ, 'ତୁ ଅମ କଥା ମାନ । ତୁ ଏ ଗଛ କୋରଡ଼ରେ ପଶ । ସ୍ୱର୍ଗରୁ ଅପସ୍ୱରୀମାନେ ବାହାଘର ଦେଖିବାକୁ ଯିବେ । ରାତରେ ଅସି ଅପସରୀଯାକ ଏ ଗଛରେ ବସିବେ । ବସିଲାରୁ ଏ ଗଛ ଉଡ଼ିଯାଇ ରଜାଘରେ ପହଞ୍ଚିବ । ତୁ ସେତେବେଳେ କୋରଡ଼ରୁ ବାହାର ବାହା ଥାନକୁ ଯିବୁ, ଗଲାରୁ ବାହା ହବୁ ।' ଯା ଶୁଣି ସେ ଟୋକା ଯାଇ ସେ ଗଛ କୋରଡ଼ରେ ପଶିଲା । ସଞ୍ଜକୁ ସଞ୍ଜ ରାତି ଧ'ଡନ ଘଡ଼ି ହେଲାରୁ ସେ ଗଛକୁ ଅପସରୀମାନେ ଅସିଲେ । ଅସି ବସିଲାକ୍ଷଣି କୁହୁକରେ ସେ ଗଛଟି ଉଡ଼ିଲା । ଉଡ଼ିକରି ଯେଉଁ ରଜାଝିଅ ବାହା ହେଉଥିଲା, ସେଠେଇଁ ପହଞ୍ଚିଲା । ସେଠିକି ଲକ୍ଷେ ରଜା ବରଣ ହୋଇ ଅସିଥିଲେ । କଏ କେତେ ରଙ୍ଗରେ ଅସିଥାଏ । ଯାନ, ବାହାନ, ଚତୁରଙ୍ଗ ବଳ, ସୈନ୍ୟସାମନ୍ତ ସମସ୍ତଙ୍କ ସାଙ୍ଗରେ ଥାନ୍ତି । ରାତକ ବରଣସଭା ହେଲା । ରଜାଙ୍କ ପାଇଁ ସବୁ ସୁନା, ରୁପା, ହୀରା, ମୋତି, ମାଣିକର ବେଦୀ ହୋଇଥାଏ । ରଜାଙ୍କ

ପାଟହାତୀ ଯାହା ଉପରେ ସୁନା କଳସ ଢାଳିବ, ସେହି ଜେମାକୁ ବାହା ହେବ । ଏଣେ ଏ ବଣିଅଟୋକା ଗଛ କୋରଡ଼ରୁ ବାହାରି ସଭା ପଛଆଡ଼େ ବସିଥାଏ । ହାତୀ ଉପରେ ସୁନା କଳସ ରଖା ହେଲାରୁ ହାତୀକି ସଭା ଭିତରକୁ ଛାଡ଼ିଦେଲେ । ହାତୀ ସଭା ଭିତରଯାକ ବୁଲି ଆସିଲା । କାହାର ଉପରେ ସୁନା କଳସ ଢାଳିଲା ନାହିଁ । ସଭା ପଛଆଡ଼କୁ ଯାଇ ସେ ଟୋକା ଉପରେ କଳସ ଢାଳି ଦେଲା । ସମସ୍ତେ ଦେଖି ଅଚମ୍ଭିତ ହେଲେ । ବୁଝିଲା ବେଳକୁ ସେ ଜାତିରେ ବଣିଆ । ବଣିଆଟାଏ ରଜାଜୋଇଁ ହେବ, ସମସ୍ତଙ୍କୁ ଏ କଥା ମାଡ଼ି ପଡ଼ିଲା । ଫେର ଥରେ ହାତୀ ଉପରେ ସୁନା କଳସ ରଖିଲେ, ହାତୀ ନେଇ ଫେର ସେ ଟୋକା ଉପରେ ଢାଳିଲା । ଏହିପରି ତିନି ଥର କଲେ । ତିନିଥରଯାକ ହାତୀ ନେଇ ସେ ଟୋକା ଉପରେ ସୁନା କଳସ ଢାଳିଲା । ରଜା ତ ପୂର୍ବରୁ ସତ୍ୟ କରିଛନ୍ତି, ହାତୀ ଯାହା ଉପରେ କଳସ ଢାଳିବ, ସେଇଯାକୁ ବାହା କରିଦେବେ । ସେହି ଦିନ ରାତିରେ ବାହାଘର ହେଲା । ବରକୁ ହଳଦୀ ଲଗେଇ ଗାଧୋଇ ଦେଲେ, ଅଳତା ସିନ୍ଦୂର ଦେଲେ, ଚନ୍ଦନପାଟୀ ବେଶ କରି ଦେଲେ । ରଜାଘର, କେଉଁ କଥା ଅପୂରୁବ ? ହୀରା ନୀଳା ମୋତି ମାଣିକ ସୁନା ରୁପାର ନାନାଦି ଅଳଙ୍କାର ବରକୁ ପିନ୍ଧେଇ ଦେଲେ । ବାହାଘର ସେହି ରାତିରେ ହେଲା । ସବୁ କଥା ତ ଆଗରୁ ଠିକ୍‌ଠାକ୍ ହୋଇଥିଲା । ବାହାଘର ସରିଲା, ମଧୁଶଯ୍ୟା ହେଲା । ଟୋକା ସେ ଘରେ ଶୋଇଛି, ଜେମା ଆଇଲେ । ଏ ଟୋକା କହିଲା, 'ଏ ଦେଶରେ ମନ୍ଦାଏ ପାଣି ପିଇବାକୁ ମିଳିଲା ନାହିଁ ।' ଜେମା କହିଲେ, 'କଅଁ ? ଏ ଘରେ ସୁନା କଳସରେ ବାସପାଣି ଅଛି, ପିଉ ନାହିଁ ?' ଜୋଇଁ କହିଲା, 'ଆମ ଗାଁରେ ଯେଉଁ ଦୁଧିଆ ପୋଖରୀ ଅଛି, ସେଥିରୁ ମନ୍ଦାଏ ପାଣି ପିଇଲେ ଆଉ କେଉଁଠା ପାଣି ଭଲ

ଲାଗିବ ନାହିଁ ।' ଫେର ଦଣ୍ଡକ ବାଦ କୋଉଁ କହିଲା, 'ଏ ଦେଶରେ ଖଣ୍ଡେ ପାନ ମିଳିଲା ନାହିଁ ।' କେମା କହିଲେ, 'କିଆଁ ? ପଲଙ୍କ ଉପରେ ସୁନା ବଟାରେ ପାନଖିଲି ଅଛି, ଖାଉ ନାହଁ ?' କୋଉଁ କହିଲା, 'ଆମ ଗାଁରେ ଧନିଆ ତାମ୍ବୁଲୀ କଡ଼ାଏ କଉଡ଼ିକେ ଖିଲେ ପାନ ଦିଏ, ସେ ପାନ ଖାଇଲେ ଅଉଠା ପାନ ଭଲ ଲାଗିବ ନାହିଁ ।' ଦଣ୍ଡକ ବାଦ ଟୋକା କହିଲା, 'ଏଠେଇଁ ମଣିଷ ମୁଠାଏ ଜଳଖିଆ ପାଇଲା ନାହିଁ ।' କେମା କହିଲେ, 'ଚନ୍ଦ୍ରଥାଳିରେ ଦିବ୍ୟସୁନ୍ଦର ଅମୃତ ଥୁଆ ହୋଇଛି, ଖାଅ ।' ଟୋକା କହିଲା, 'ଆମ ଗାଁରେ ରାମା ଗୁଡ଼ିଆ ଅଧଲାକୁ ଗୋଟିଏ ମୁଆଁ ଦିଏ । ସେ ମୁଆଁରୁ ଖଣ୍ଡେ ଖାଇଲେ ଆଉ କେଉଁଠା ଜଳଖିଆ ସୁଆଦ ଲାଗିବ ନାହିଁ ।' ଏହି ସମୟରେ ରାତି ଜାଙ୍ଗୁଲି ଜାଙ୍ଗୁଲି ହେଲା, ବଣିଆ ଟୋକା କଣ ମନକୁ ପାଞ୍ଚିଲା, ଯେଉଁ ଗଛ କୋରଡ଼ରୁ ଅସିଥିଲା, ମହୁଶଯ୍ୟାରୁ ଉଠି ସେହି କୋରଡ଼କୁ ବାହାରିଗଲା । ଏଣେ ଅପସରୀମାନେ ସେତିକିବେଳେ ଗଛରେ ବସି ଗଛକୁ ଉଡ଼େଇ ନେଲେ । ଗଛ ସନ୍ଧ୍ୟାବେଳେ ଯେଉଁଠି ଥିଲା, ଫେର ତହିଁ ଆର ଦିନ ଖରା ପଡ଼ିଲା ବେଳକୁ ଯାଇ ସେଇଠି । ବଣିଆ ଟୋକା ସେ କୋରଡ଼ରୁ ବାହାରିଲା । କାଲି ରାତି କଥାଯାକ ତାକୁ ସବୁ ଅପସନ୍ଦ ଲାଗୁଥାଏ । କିମିତି ଘରକୁ ଫେରି ଯିବ, ମାକୁ ନ କହି ପଳେଇ ଅସିଛି । ଏଥିରେ ଫେର ବାହା କଥା କହିଲେ ସମସ୍ତେ ବାୟା ବୋଲି କହିବେ । ସ୍ତ୍ରୀ ବସ୍ତ୍ରର ଅଳଙ୍କାର ଯାକ, ବାହା ଲୁଗାତକ କାଢ଼ି କରି ଗୋଟିଏ ବୋକଚା କଲା । ବାଟରେ ଅଚ୍ଛା କରି ଗାଧୋଇ ପାଧୋଇ ଘଷିଘାଷି ହୋଇ ସିନ୍ଦୂର ଅଳତା ହଳଦ ନବେଇଲା । ଯାଇ ଘରେ ପହଞ୍ଚିଲା । ମା ଘରେ ନ ଥାଏ । ସେ ବୋକଚାଟି ଘର ଭିତରେ ଗାତ ଖୋଳି ପୋତିଲା । ମା ଅସି ପଚାରିଲାରୁ କହିଲା, 'ତୁ ଘରେ ନ ଥିଲୁ, ମୁଁ ଆସି ପହଞ୍ଚିଲି,

ମତେ ଭୋକ କଲା, ମୁଁ ହାତରେ ଭାତ ବାଢ଼ି ଖାଇ କର ଅଇଁଠା ଲିପି ଦେଲି ।' ମା ପୁଅକୁ ପାଇ ଆନନ୍ଦରେ ରହିଲା । ଏଣେ ରଜା-ଝିଅ ସକାଳୁ ଦେଖେ, ବର ନାହିଁ । କେତେ ଥାନ ଖୋଜେଇଲେ, ଜୋଇଁ ମିଳେଇ ନାହିଁ । ପଛକୁ ଡେଙ୍ଗୁରା ଦେଲେ । କେତେ ରଜା ଆସି କହିଲେ, ଆମେ ଜୋଇଁ । କିନ୍ତୁ ମହୁଣସ୍ୟା ରାତର ଭିତରର କଥା କେହି କହି ପାରନ୍ତି ନାହିଁ, ହାଣ ଖାଆନ୍ତି । ଇମିତ କେତେ ଦିନ ଗଲା । ଜେମା ବୁଦ୍ଧିଏ ପାଞ୍ଚିଲା । ଗୁର ଦଗକୁ ଗୁର ମଣିଷ ପଠେଇଲା, କହିଲା 'ଯେଉଁଠି ଭଲ ଖାଇବା ରକମ ମିଳିବ, ଆଣିବ'। ଯେ ଏ ବଣିଅ ଟୋକା ମୁଲକକୁ ଗଲା, ସେ କୁହୁଆ ପୋଖରୀରୁ ପାଣି ତାଳେ, ଧନିଆ ତାମ୍ବୋଳୀଠଉଁ ପାନ ଖଣ୍ଡେ, ରମା ଗୁଡ଼ିଆଠଉଁ ମୁଆଁ ଗୋଟିଏ ଆଣିଥାଏ । ଆଉ ତିନିଜଣଯାକ ଯାହା ଆଣିଥିଲେ, ଜେମା ମନକୁ ସେମାନ ଆସିଲା ନାହିଁ । ଏ ତିନି ରକମ ରୁଚିଲା । ଜେମା ସେ ମଣିଷକୁ ପଚାରିଲା । ମଣିଷ ରମା ଗୁଡ଼ିଆ, ଧନିଆ ତାମ୍ବୋଳୀ ଏ ଦିହିଙ୍କ ନାଁ କହିଲା । ଜେମା ରାଣୀଙ୍କୁ ତହିଁ ଆର ଦିନ କହିଲା, ମୁଁ ଜୋଇଁଙ୍କ ଖୋଜିବାକୁ ଯିବି । ଜେମା ଯାଇ ବଣିଅ ଟୋକା ରାଇଜରେ ପହଞ୍ଚିଲା । ସେ ରାଇଜରେ ରଜା ସାଙ୍ଗରେ ଧର୍ମଝିଅ ହେଲା । ରଜାଙ୍କୁ କହି ଏ ବଣିଅ ଟୋକା ଗାଁ ପାଖରେ ଦିବ୍ୟସୁନ୍ଦର ନଅର ତୋଳେଇ ସେଠଉଁ ରହିଲା । ରଜାଙ୍କୁ କହିଲା, 'ବାପା ! ଏ ଗାଁରୁ ଜଣେ ଲେଖାଏଁ ମଣିଷ ନିତ ରାତକୁ ମୋ ନଅରରେ ପହରା ଦେବେ ।' ରଜା ସିମିତ ହୁକୁମ ଦେଲେ । ଯେ ପହରା ଦବାକୁ ଆସେ, ଜେମା ତାକୁ ବିଭା ହେବା କଥା ପଚାରେ । କାହା କଥା ଜେମା ମନକୁ ପାଏ ନାହିଁ । ପଛକୁ ସେ ବଣିଅ ଟୋକାର ପାଳି ପଡ଼ିଲା । ଦିହେଁଯାକ ଚିହ୍ନାଚିହ୍ନି ହେଲେ । ଏ ଟୋକା ମାକୁ ତା ଘରଠଉଁ ପାଲିଙ୍କିରେ ପାଟ ପୀତାମ୍ବର ପିନ୍ଧେଇ ନୂଆ ନଅରକୁ

ଆଣିଲା । ଟୋକା ବେଳରେ ଯେଉଁ ମଣି ବନ୍ଧା ହୋଇଥିଲା, ତାକୁ ରଜାଙ୍କୁ ଦେଖେଇଲା । ରଜା ସେ ଟୋକାକୁ ଆଣି ଗାଦିରେ ବସେଇଲେ । ପୁଅ ବହୂ ଦିନ ଘର କଲେ । ଅମେ ଗଲାରୁ କଥା କହୁଲେ ନାହିଁ ।



# ଟିପା ଟିପି କଥା ।

ଗୋଟିଏ ଦେଶରେ ବାପ ଛେଉଣ୍ଡା, ମା ଛେଉଣ୍ଡା ଯୋଡ଼ିଏ ପିଲା ଥାଆନ୍ତି । ବଡ଼ ଭାଇଟି ନାଁ ଟିପା, ସାନ ଭଉଣୀ ନାଁ ଟିପି । ଦିନେ ଟିପା ଟିପି ବିଚାରିଲେ ପିଠା କରନ୍ତେଇଁ । ଗାଁରୁ ମାଗି ଯାଚି ଚାଉଳ ଗୁଡ଼ଲ ପିଠାଖଣ୍ଡିକା ସବୁ ଆଣିଲେ । ଘରେ ନାହିଁ ଜାଳ । ଟିପାଟିପି ଦିହେଁ କାଠ ଆଣିବାକୁ ବଣକୁ ଗଲେ । ଅଗ୍ନାଅଗ୍ନି ବନସ୍ତ, କୁଆର ଥଣ୍ଟ ନାହିଁ, କି ଚଢ଼େଇର ବେଣ୍ଟ ନାହିଁ । ସେଠେଇଁ ଜନ ପ୍ରାଣୀ ଗୋଟିଏ କେହି ଦିଶୁ ନାହିଁ । ଟିପା ଦିନ୍ତେ କାଠ ହାଣେ, ଟିକିଏ ବସେ; ବାକ୍ରିତ ପୁଅ, ସୁକୁମାର ଜୀବନ, ଦିଣ୍ଡେ ହାଣେ, ଟିକିଏ ବସେ; ଫେର ଟିପି ଉଠେ, ଦିଣ୍ଡେ କାଠ ହାଣେ, ଟିକିଏ ବସେ । ଦିହେଁଯାକ ଏହିପରି କାଠ ହାଣୁଥାନ୍ତି, ଗୀତ ବୋଲୁଥାନ୍ତି, "କାଠ ହାଣୁ ଠୋଠା, ବାଘମାମୁ ଅଣ୍ଟେ ହଗି ଯା ।" ବଣରେ ବାଘମାମୁ ରଜା, କୁଆଡ଼େ ଥିଲା ଆସି ପହଞ୍ଚିଲା । କହିଲା, 'ମୋ ରାଇଜରେ ତୁମେ କିଏ ରେ ? ମୋ ବନସ୍ତକୁ କାଠ ହାଣୁଛ, ଫେର ମତେ ଗାଳି ଦେଉଛ ! ତୁମ ଛୋଟି କଣା କରି ରକତ ପିଇବି । ତୁମର ଫେର ଏଡ଼େ ଗରବ !' ପିଲାଙ୍କର, ଯା ଦେଖି ଦିହିଙ୍କ ଦେହରୁ ରକତ ଶୁଖିଗଲା । ବେକରେ ପାଲଭଣ୍ଡ଼ ପକେଇ ଲମ୍ବ ହେଇ ବାଘମାମୁ ଗୋଡତଳେ ପଡ଼ିଲେ । କହିଲେ, 'ବାଘମାମୁ ! ଆମେ ପିଠା କରିବୁଁ, ତତେ ପିଠା ଦେବୁଁ, ଆମକୁ ଛାଡ଼ି ଦେ ।' ବାଘମାମୁ କହିଲା, 'ହଉ' । ସେଥିରୁ ଟିପା ଟିପି କାଠ ଗୋଟିଏ ଲେଖାଏ ମୁଣ୍ଡେଇ ଘରକୁ ଆସିଲେ । ଘରେ ପିଠା ତିଆରି କଲେ । ଟିପା ପିଠା କରେ, ଟିପି ଖାଏ, ଫେର ଟିପି କରୁଥାଏ, ଟିପା

ଖାଉଥାଏ । ଚାଖୁ ଚାଖୁ ପିଠାତକ ଅସି ସରନ୍ତଣି । ବାଘମାମୁ କଥା ମନେ ପଡ଼ିଗଲା । ଦେହରୁ ରକତ ଶୁଖିଗଲା । ଦଣ୍ଡେ ଗଲାରୁ ବାଘମାମୁ ଆସିଲେ ତ ଆମକୁ ଖାଇବ, କଣ କରିବା ? ବିଚାରି ବିଚାରି ଟିପା ଆପଣା ଦେହରୁ ବୁଦ୍ଧି କାଢ଼ିଲା । ଦାଣ୍ଡରୁ ମାଙ୍କଡ଼ା ପଥର ଚାରି ଖଣ୍ଡ ଗୋଟେଇ ଆଣିଲା, ଶିଳରେ ବାଟି ପିଠଉ ତିଆର କରି ଯୋଡ଼ିଏ ପିଠା ତିଆର କଲେ । ଦାଣ୍ଡ ଦୁଆର ଇରୁଣ୍ଡିବନ୍ଧ ଉପରେ ଗୋଟିଏ ଭଲ ପିଠା ତଳେ ମାଙ୍କଡ଼ାପଥର ପିଠା ଏପରି ଦଓଟି ପିଠା ରଖିଲେ । ବାଡ଼ି ଦୁଆର ଇରୁଣ୍ଡିବନ୍ଧରେ ସିମିତ ଯୋଡ଼ିଏ ପିଠା ରଖି କବାଟ କିଳି କାଞ୍ଜି ପାଣି ହାଣ୍ଡିରେ ଦହେଁଯାକ ଲୁଚିଲେ । ନିଶା ଗରଜିଲାରୁ ବାଘମାମୁ ନିଶ ଫୁଲେଇ ପିଠା ଖାଇବାକୁ ଆସିଲା । କବାଟରେ ଡାକିଲା, ଟିପା କବାଟ ଫିଟା ରେ, ଟିପି କବାଟ ଫିଟାରେ ମ୍ । କେତେ ଡାକିଲା, କେହି କବାଟ ଫିଟେଇଲେ ନାହିଁ । ପଛକୁ ଦେଖିଲା, ଦାଣ୍ଡ ଅଡ଼ ଇରୁଣ୍ଡିବନ୍ଧରେ ଯୋଡ଼ିଏ ପିଠା । ଉପର ପିଠାଟି ଖାଇଲା, କି ସୁନ୍ଦର ଲାଗିଲା; ତଳ ପିଠାଟିରୁ ଖଣ୍ଡେ ପାଟିକି ନେଇଛି, ରୁଡ୍‌କିନା ଗୋଟିଏ ଦାନ୍ତ ଭାଙ୍ଗିଗଲା । ଫେର ଖଣ୍ଡେ ଚୋବେଇଲା ବେଳକୁ ଫେର ଗୋଟିଏ ଦାନ୍ତ ଉପୁଡ଼ି ଗଲା । ବାରିଅଡ଼କୁ ଯାଇ ଦେଖେ, ଇରୁଣ୍ଡିବନ୍ଧ ଉପରେ ଯୋଡ଼ିଏ ପିଠା । ଉପର ପିଠା ଖାଇ ସାରି ତଳ ପିଠା ଖାଇଲା ବେଳକୁ ଫେର ଯୋଡ଼ିଏ ଦାନ୍ତ ଭାଙ୍ଗିଗଲା । ବାଘ ପରି ଜନ୍ତୁ, ଯନ୍ତ୍ରା କି ସହେ ? ରାଗରେ କଡ଼ମଡ଼ ହଉଥାଏ । କବାଟରେ କେତେ ମାରିଲା, କେତେ କଅଁଳେଇ ଡାକିଲା, କେହି କବାଟ ଫିଟେଇଲେ ନାହିଁ । ପଛକୁ ଚୂଳ କଣା କରି ଘରେ ପଶିଲା । ଏ କଣ ଦରାଣ୍ଡିଲା, ସେ କଣ ଦରାଣ୍ଡିଲା, ଟିପା ଟିପିଙ୍କୁ କାହିଁ ପାଇଲା ନାହିଁ । ପଛକୁ କଣ ମନେ ମନେ ବିଚାରିଲା, କାଞ୍ଜି ପାଣି ହାଣ୍ଡିକି ମୁଣ୍ଡେଇଲା, ଯେଉଁ ବାଟେ ଆସିଥିଲା,

ସେହି ବାଟେ ଗଲା । ବାଙ୍ଗିଆଣି ହାଣ୍ଡି ଭିତରେ ଟିପା ଟିପି ଅଛନ୍ତି, ତାକୁ ଜଣା ନାହିଁ । ଟିପା ଟିପି ବାଘମୁଣ୍ଡରେ ବସିଛନ୍ତି, ମହା ଆନନ୍ଦ, ଦୁହିଙ୍କି ହସ ମାଡ଼ିଲା । ଟିପା କହିଲା,'ଟିପି ଲୋ, ଥିର କର ହସିବୁଟି'! ଟିପି କହିଲା, 'ଟିପା ରେ ବଡ଼ଘାଏଁ ହସିବୁ ନାହିଁଟି' ! ଯା' କହୁ କହୁ ଦୁହେଁଯାକ ଖେଁ ଖେଁ ହୋଇ ହସି ଉଠିଲେ । ହାଣ୍ଡି ଭିତରୁ ଏ ଶବ୍ଦ ଶୁଣି ବାଘମାମୁ ତର୍ଚ୍ଛି ହୋଇ ହାଣ୍ଡିକି ତଳେ କଚାଡ଼ି ଦେଇ ବଣକୁ ପଳେଇଲା । ସେଇଠେଇଁ ଟିପା ଟିପି ବଡ଼ାଏ କଜଡ଼ି ପାଇଲେ, କଜଡ଼ି ବଡ଼ାକର ମୁଆଁ ଟିଏ କିଣିଲେ, ପୋଖରୀକୂଳକୁ ଗଲେ ମୁଆଁଟି ଖାଇବେ । ସେତିକିବେଳେ ପବନ ଦେଲା, ମୁଆଁଟି ଉଡ଼ି ପାଣିରେ ପଡ଼ିଲା । ପଛକୁ ଟିପା ଏକ ବୁଦ୍ଧି ପାଞ୍ଚିଲା । ଦୁହେଁଯାକ ମୁହଁ ଲଗେଇ ପୋଖରୀର ପାଣି ପିଇଲେ । ପୋଖରୀ ଶୁଖି ତଳରୁ ମୁଆଁଟିକି ପାଇଲେ, ଖାଇଲେ, ଅସିଲେ । କେମିତି ଯାଇ ଘରେ ପହଞ୍ଚିବେ, ଏଇ ଚିନ୍ତା ଲାଗିଲା । ଯାଉଁ ଯାଉଁ ବାଟରେ ସନ୍ଧ୍ୟା ହେଲା । ପାଖରେ ଖଣ୍ଡିଏ ଗାଁ, ଗାଁରେ ଅଠ ଦଶୋଟି ଘର । କେଉଁଠି ଟିକିଏ ଅଶ୍ରା ମିଳିଲେ ରାତିଟା ବିତିଯିବ, ଫେର ସକାଳୁ ଉଠି ଆପଣା ଘରକୁ ଯିବେ । ରାମବୋଉ ଘରେ ଯାଇଁ ପହଞ୍ଚିଲେ । ଡାକିଲେ, 'ରାମବୋଉ ଲୋ ରାମବୋଉ, ଥାନ ଟିକିଏ ଦେଇନାରୁ' । ରାମବୋଉ କହିଲା— 'ମୋ ରାମଟି ବଡ଼ ଦୁଷ୍ଟ, କହୁଣି ମାରେ ରୁଠୁ ରୁଠୁ; ଦୁର ପଳା, ଦୁର ପଳା' । ସେଠଉଁ ପଳେଇଲେ, ଯାଇଁ ଭଗିଆମା ଘରେ ପହଞ୍ଚିଲେ— 'ଭଗିଆମା ଲୋ ଭଗିଆମା, ଥାନ ଟିକିଏ ଦେଇନାରୁ' । 'ମୋ ଭଗିଆ ବଡ଼ ଦୁଷ୍ଟ, କହୁଣି ମାରେ ରୁଠୁ ରୁଠୁ; ଦୁର ପଳା, ଦୁର୍ ପଳା' । ଇମିତି ଶଙ୍କରମା, ଦୀନାବୋଉ ହେଉକା କେତେ ଲୋକଙ୍କ ପାଖକୁ ଗଲେ, କେହି ଟିକିଏ ଥାନ ଦେଲେ ନାହିଁ । ପଛକୁ ଅମ-ବେଲ-ବୋଉ ଘରେ ଯାଇଁ ଡାକିଲେ । ବେଲବୋଉ ରାଣ୍ଡୀଟିଏ,

ଛାର କେହୁ ନାହିଁ, ପିଲା ଦାହୁଙ୍କି ଧଡ଼କନା କବାଟ ଫିଟେଇ ଦେଲେ । ଟିପା ଟିପି ଦହେଁଯାକ ଯାଇ ବେଲବୋଉ ପାଖରେ ଶୋଇଲେ । ରାତ ପହରେ ଅଛି, ଟିପା ଟିପିଙ୍କୁ ଉବଛିଅ ପରସ୍ରା ମାଡ଼ଲା । ପୋଖରୀଯାକ ପାଣି ପିଇଛନ୍ତି, ଏଥିରେ କି ଆଉ ସମ୍ଭଳା ପଡ଼େ ? ଶୋଇଛନ୍ତି, ଘରଭିତରେ ହେଲା ପରସ୍ରା । ପୋଖରୀଯାକ ପାଣିରେ ଘର ଦ୍ୱାର ବୁଡ଼ିଗଲା । ସକାଳୁ ଦେଖିଲା ବେଳକୁ ବେଲବୋଉ ଟିପା ଟିପି ଭନିଙ୍କି ତନିହେଁ ପାଣିରେ ଉବେଇ ଟୁବେଇ । ଗାଁରୁ କଦଳୀଘୋଡ଼ା କଥା ହେଲା, ସେଥିରେ ଲୋକେ ଭେଳା କରି ତିନି ଜଣଙ୍କୁ ଶୁଖିଲାକୁ ଆଣିଲାରୁ ବଞ୍ଚିଲେ । ଆମେ ଗଲାରୁ କଥା କହିଲେ ନାହିଁ ।

ମୋ କଥାଟି ସରିଲା, ଫୁଲ ଗଛଟି ମଲା । * * *

# ଗୃହ ମହାଜନପୁଅ କଥା ।

ଏକ ମହାଜନର ଗୃହ ପୁଅ, ମହାଜନ ମଲା ବେଳେ ଗୃହ ପୁଅଙ୍କୁ ଡାକି ପାଖରେ ବସେଇଲେ । କଳିକାଳ ପିଲା, ତାଙ୍କୁ କେଉଁ ବିଶ୍ୱାସ, ଅଜି ଯିନା ବୁଢ଼ା ବସିଛି, କାଲି ସକାଳେ ବୁଢ଼ା ଅଖି ବୁଜିଲେ ଯେଉଁ ହାଣ୍ଡି ଖଣ୍ଡମାନ ଭିନେ କରିନେବେ । ଏତେ ଧନ ଦରବ ଅକାରଣେ ଖଣ୍ଡି ଖାଇବେ । ମହାଜନ ଏ କଥା ବିଚାରି ବିଗୃହ ପୁଅଙ୍କୁ ପାଖରେ ବସେଇଲେ । ମହାଜନର ଗୋଟିଏ ପୁଅ ସବୁ ବଡ଼ ନ୍ୟାୟବନ୍ତ । ତାଙ୍କୁ ଭାଳଚରଜ ଜଣା । ମହାଜନ ପିଲା ଗୃହଙ୍କି କହିଲେ, 'ମୁଁ ଦିନା ଅଜଯାଏ ଥିଲି ବୋଲି କେଉଁ କଥା ଭାବନା ନ ଥିଲା । ମୁଁ ତ ଏବେ ଏ ଧାମରୁ ଯାଉଛି । ଯେବେ ତୁମର ଭିନେ ହେବାକୁ ମନ ବଳିବ, ତେବେ ମଜସାଙ୍କୁ ଡାକିବ, ମଜସା ତୁମଙ୍କୁ ଯେଉଁ ଗଣ୍ଡାକ ବିଶ୍ୱାକ ବାଣ୍ଟି ଦେବେ, ତୁମେ ସେଇ ଭାଗବାଣ୍ଟ ନେଇ ଯେଉଁ ଘର ଯେ କରିବ, ଆଉ ଦ୍ୱନ୍ଦ ଲଗାଇବ ନାହିଁ' । ଏହା କହି ମହାଜନ ମଲା ।

ଏ ଗୃହ ପୁଅଙ୍କ ଭିତରୁ ସଭି ବଡ଼ ଭାଇ ପାଠ ସାଠ କରେ । ତା ତଳ ଭାଇଟି ନ୍ୟାୟ ନିଶାପ କରେ । ତଳ ଦି'ଭାଇ ହଳଚାଷ କରନ୍ତି, ବିଲବାଡି ଧନ୍ଦା ବୁଝନ୍ତି । ଏହିପରି ଗୃହ ଭାଇ ଥାନ୍ତି । ବଡ଼ ଦି'ଭାଇ ଏଣେ ତେଣେ ଘଡ଼ିଏ ଦି'ଘଡ଼ି ଯାନ୍ତି, ଆସି କରି ଘରେ ପଲଙ୍କରେ ଗଡ଼ଗଡ଼ଉଥାନ୍ତି । ସାନ ଦି' ଭାଇ ଦିନଯାକ ମିହନ୍ତ କରି ଖରା ବର୍ଷା ସହି ସନ୍ଧ୍ୟାବେଳକୁ ଘରକୁ ଆସନ୍ତି, ମୁଠାଏ ମୋଟା

ବେଣ୍ଟା ଖାଇ ଏଠେଇଁ ସେଠେଇଁ ପଡ଼ିଯାନ୍ତି । ଦି' ଭାଇ ଖାଇ ପିଇ ଅପୁସ କରୁଛନ୍ତି, ଆଉ ଦି' ଭାଇ ମୂଲଅଙ୍କଠଉଁ ହୀନ । ସ୍ତ୍ରୀ କ ଅଉ ବୋହୂମାନଙ୍କ ଅଣରେ ଯିବ ? ଭାଇଙ୍କ କଥା ପଛକେ ଭାଇ ବୁଝୁଥାନ୍ତୁ, ଘର ବୋହୂ ତ ଏକା ସମାନ ! ସେଥିରୁ ବଡ଼ ଦି' ବୋହୂ କାହିଁକି ଧନ ଘର ପଥର କଟୁ ଅଡ଼ଉପଜ କରିବେ ନାହିଁ, ପାଟ ପୀତାମ୍ବର ପିନ୍ଧି ପାନ ଖାଇ ପଲଙ୍କରେ ଗଡୁଥିବେ ? ସାନ ଦି' ଯାଆ କଣ ନାଆଁରେ ମୁଡଛନ୍ତି ଯେ ପାଇଟି କରି କରି ଠେଙ୍ଗି ଛୁଣ୍ଡୁଥିବ ? ରାତିରେ ସାନ ଦି' ବୋହୂ ଗେରସ୍ତଙ୍କୁ ଦେଖେଇ ଶିଖେଇ କେତେ କଲ୍ପଗୁଣା ଦଅନ୍ତି, କେତେ ଧିକ୍କାରନ୍ତି । କହନ୍ତି, 'ଯେଝା ଗଣ୍ଠିକ ଯେ ବାଣ୍ଟି ନେଲେ ସୁଖରେ ରହନ୍ତି । ପର ଅନୁସରଣରେ ମୁଣ୍ଡ ଗୁଞ୍ଜି କେତେ କାଳ ପଡ଼ିଥିବ ? ବଡ ଦି' ଭାଇ କଣ ଦଶମାସିଆ, ତୁମେ ଦିହେଁ ଛମାସିଆ' ? ଦିନାକେତେ ଗଲାରୁ ଏ କଥାମାନ ଶୁଣି ଶୁଣି ସାନ ଭାଇ ଦିହେଁ ଆଉ ସମ୍ଭାଳି ହୋଇ ରହି ପାରିଲେ ନାହିଁ । ଦିନେ ବଡ ଭାଇଙ୍କ ପାଖକୁ ଯାଇ କହିଲେ, 'ଭିନେ ହବା' । ସେଥିରୁ ସମସ୍ତେ କହିଲେ, 'ବାପା ବିଯୋଗ ହେଲା ବେଳେ କହି ଯାଇଛନ୍ତି, ଚାଲ, ମଉସାଙ୍କୁ ଡାକି ଆଣିବା, ମଉସା ଯାହା ବାଣ୍ଟି ଦେବେ, ଆମର ସେଥିରେ ରାଜି' । ସମସ୍ତେ ଯାଇ ମଉସାଙ୍କ ଘରେ ପହଞ୍ଚିଲେ । ମଉସାଙ୍କର କାଙ୍କଚରିତ ପଢ଼ା ଥିଲା, ଅଗତ କଥା ଦଣ୍ଡକେ ଜାଣି ପାରୁଥିଲେ । ପୁତୁରମାନଙ୍କୁ ଦେଖିଲାକ୍ଷଣି ସବୁ କଥା ଜାଣି ପାରିଲେ; ପଦାରେ ନ ଜାଣିଲା ପରି ହୋଇ ପୁତୁରାଙ୍କୁ ଭାରି ଆଦର କଲେ, ଗୋଡ଼ ହାତ ଧୋଇବାକୁ ପାଣି ଅଣେଇ ଦେଲେ, ଦାଣ୍ଡ ପିଣ୍ଡାରେ ବସିବାକୁ ମସିଣା ପକେଇ ଦେଲେ, ଦୁଃଖ ସୁଖ ପଚାରିଲେ । ମହାଜନପୁଏ ଦୁଃଖ ସୁଖ କହିବେ କଣ ? ଭିନେ ହବା କଥା କହିଲେ । ମଉସାଙ୍କୁ ବାପା ଭଲ ଲୋକ ମାନିଛନ୍ତି,

ମଞ୍ଜୁସା ଗଲେ ଭାଇମାନେ ଭନେ ହେବେ । ମଞ୍ଜୁସା ତ ସବୁ କଥା ଜାଣି ପାରିଲେଣି । କହିଲେ, 'ମତେ ତ କାଲି ରାତିରେ ସପନ ହୋଇଥିଲା ତୁମେ ସମସ୍ତେ ଆଜି ଏଠିକି ଆସିବ ବୋଲି । ସପନରେ ମତେ ହୁକୁମ ହୋଇଛି, ପୁତୁରା, ପୁତୁରାବୋହୂ, ସମସ୍ତଙ୍କୁ ଘେନି ପୁରସ୍ତମ ଯିବ, ଜଗନ୍ନାଥଙ୍କୁ ମୁଣ୍ଡିଆଟାଏ ଲେଖାଏଁ ମାରି ଫେରି ଆସିଲେ ତୁମ ଗୁରୁ ଭାଇଙ୍କି ଭନେ କରି ଦେଇ ଆସିବ' । ଏ କଥାରେ ଗୁରୁ ଭାଇଯାକ ମଙ୍ଗିଲେ । ସେଥିରୁ ମଞ୍ଜୁସା ଗୁରୁ ପୁତୁରା, ଗୁରୁ ପୁତୁରାବୋହୂଙ୍କୁ ଘେନି ଜଗନ୍ନାଥଦର୍ଶନକୁ ବାହାରିଲେ । ପୁରସ୍ତମରେ ପହଞ୍ଚି ଦିଅଙ୍କୁ ଦର୍ଶନ କଲେ । ଫେରି ଆସିଲାବେଳକୁ ବାଟରେ ଏକ ପଢ଼ିଆ ପଡ଼ିଲା । ଦିନ ଅସି ଦି'ପହରରୁ ବିତଲାଣି, ଗୁଲି ଗୁଲି ସମସ୍ତେ ଥକିଛନ୍ତି । ମଞ୍ଜୁସା କହିଲେ, 'ଅଉ ଗୁଲି ପାରିବା ନାହିଁ, ଆଜି ଏଠେଇଁ ଖରା ବର୍ଷା ପାଳିବା' । ଯ୍ୟା କହି ଗଣ୍ଠିରି ଫିଟେଇ ଦେଖିଲା ବେଳକୁ ଗଣ୍ଠିରେ ଟଙ୍କା ଗାଞ୍ଜିଆଟି ନାହିଁ ! କେତେ ବ୍ୟସ୍ତ ହେଲେ । ସମସ୍ତେ କାନ୍ଦ ବୋବେଇ ତୁନି ହେଲେ । ପଛକୁ ମଞ୍ଜୁସା କହିଲେ, 'ପିଲାଏ, ତମେ ତ ସମସ୍ତେ ଗୁଣବନ୍ତ, ଗୁରୁ ଭାଇଯାକ ଗୁରୁ ଆଡକୁ ଯାଅ, ଯେ ଯାହା କମେଇ ପାରିବ ଆଣ, ଏଠେଇଁ ରାନ୍ଧିବା, ଖାଇ ପିଇ ଆଉ ଉପାୟ ଦେଖିବା' । ଗୁରୁ ଭାଇ ଗୁରୁ ଆଡ଼କୁ ଗଲେ । ସଭି ସାନ ଭାଇ ଗୁପ କାମରେ ଧୁରନ୍ଧର । ଯାଉଁ ଯାଉଁ ବାଟରେ ଚଷାଟିଏ ହଳ ବୁଲଉଛି । ବଳଦ ଦହେଁ ଅମଣିଆ, ଦିନ ଅସି ଦି'ପହରରୁ ବଳିଲାଣି, ଅରୁଏ ସୁଦ୍ଧା ମଡ଼େଇ ପାରି ନାହାନ୍ତି । ଚଷା ବଡ଼ ବ୍ୟସ୍ତ ହୋଇ ବସିଛି । ଏହି ସମୟରେ ସଭି ସାନ ଭାଇ ଯାଇଁ ପହଞ୍ଚିଲା । ଚଷାକୁ ପଚାରିବାରୁ ଚଷା ସବୁ ହାଲ କହିଲା । ମହାଜନପୁଅ କହିଲା, 'ମୁଁ ଘଡ଼ିକେ ଏ ବିଲଖଣ୍ଡ ଧରି ଦେବି, ତୁ କଣ ଦବୁ' ? ଚଷା ଶୁଣି ଭାରି ଖୁସି ହେଲା । ପଛକୁ ଠିକ୍ ହେଲା,

ଚଷା ୫ ସେର ଚାଉଳ, ଡାଲି ପରିବା କିଛି, କାଠ ବୋଝେ ଦବ । ଚଷା ଚାଉଳ ହେବକା ଆଣିବାକୁ ଗଲା । ସିଧା ସାମଗ୍ରୀ ଘେନି ଆସିଲାବେଳକୁ ମହାଜନପୁଅ ସେ ବାଲିଖଣ୍ଡିକ ଚଷି ସାରି ବସି ହାଇ ମାରୁଛି । ଚଷା ଏତକ ସାମଗ୍ରୀ ମହାଜନପୁଅ କାନ୍ଧରେ ବାନ୍ଧି ଦେଲା । ମହାଜନପୁଅ ସେତକ ଘେନି ଆସି ଠିକଣାରେ ପହଞ୍ଚିଲା । ତା ଉପର ଭାଇଟି ଆଉ ଅଡ଼େ ଯାଇଥିଲା । ଏକ ଜାଗାରେ ଦେଖିଲା, ୫।୭ ଜଣ ମଣିଷ ଠିଆ ହୋଇ କଥାବାର୍ତ୍ତା ହଉଛନ୍ତି । ତାଙ୍କ ପାଖରେ ଯାଇଁ ପହଞ୍ଚିଲା । ସେମାନେ କହିଲେ, 'ଏ ବିଲରେ ସବୁଦିନେ ପାଣି ବହେ, ଧାନ ହବାକୁ ନାହିଁ । ଏଣେ ରଜା କରରୁ ଛଡ଼ାଏ ଛାଡ଼ିବାକୁ ନାହିଁ । ଏଥିରେ ଭଲା କି ଉପାୟ କଲେ ଧାନ ଅବାଦ ହବ' ? ମହାଜନପୁଅ ତ ଚାଷ ବିଦ୍ୟାରେ ଧୁରନ୍ଧର, କହିଲା, 'କଣ ଦବ, ମୁଁ ଉପାୟ କହି ଦେବି' । ଏମାନେ କହିଲେ, 'ଅମେ ଦଶଟି ଟଙ୍କା ଦେବୁଁ' । ମହାଜନପୁଅ କହିଲା, 'ମାଟି ଗୋବର ମିଶେଇ ବାଟୁଳାଗୁଡ଼ିଏ କଲ ତା ଭିତରେ ପୁଞ୍ଜାଏ ଲେଖାଏଁ କୋଇଲିବାଇ ଧାନ ପୂରେଇ ଏ ପାଣି ଉପରେ ପକେଇ ଦେଲେ ସେ ବାଟୁଳାମାନ ପାଣିରେ ବୁଡ଼ିଯିବ, ସେଥିରୁ ଗଛ ଉଠି ଧାନ ହେବ' । ଏ କଥା ସମସ୍ତଙ୍କ ମନକୁ ଆସିଲା । ମହାଜନ ପୁଅକୁ ଦଶଟି ଟଙ୍କା ଦେଇ ଖୁସିରେ ବିଦା କଲେ । ମହାଜନପୁଅ ଟଙ୍କା ଆଣି ବାଟରେ ସଉଦା କଣି ଠିକଣାରେ ଆସି ପହଞ୍ଚିଲା । ଏଣେ ତା ଉପର ଭାଇ ଯାଇଥିଲା ଆଉ ଅଡ଼େ । ସେ ଭାଇଟି ନ୍ୟାୟ ଜାଣାପ କରେ । ଯାଉଁ ଯାଉଁ ବାଟରେ ଗୋଟିଏ ବରଗଛମୂଳେ ଜଣେ ବସି କାନ୍ଦୁଛି, ମଣିଷଟି ସୁନ୍ଦରମୂର୍ତ୍ତିମନ୍ତ, ବଡ଼ଲୋକଘର ପୁଅ ପରି ଦିଶୁଥାଏ । ମହାଜନପୁଅ ତାକୁ ପଚାରିବାରୁ ସେ କହିଲା—'ଅମେ ଚାରି ଭାଇ ଭଗ୍ନେ ହେଉଥିଲୁଁ, ଜଣକେ ଲକ୍ଷେ ଟଙ୍କାର ସମ୍ପତ୍ତି ବାଣ୍ଟି

ପଡ଼ିଥିଲା । ସବୁ ବାଣ୍ଟ ହେଲା, ପଛକୁ ଗୋଟିଏ କାଳ ବାଝିଆ ବଣ୍ଟାବାରୁ ବଳି ପଡ଼ିଲା । ତାକୁ କିଏ ନେବ ? ସବୁ ଭାଇମାନେ ଅବୁଝା ହେଲୁ । ପଛକୁ ଭଲଲୋକେ ଅସି ବାଣ୍ଟିଦେଇ ଗଲେ, ଗୃହଭାଇଙ୍କର ଗୃହ ଗୋଡ଼ । ବାଝିଆଟି ଦୋଠରେ ରହିଲା, ଭାଇକେ ଗୋଟାଏ ଲେଖାଏଁ ଗୋଡ଼ରେ ଅଧିକାର ରହିଲା । ଦୈବଯୋଗକୁ ବାଝିଆଟି ଦିନେ ଡେଇଁ ପଡ଼ିଲା । ମୋ ଭାଗରେ ଯେଉଁ ଗୋଡ଼ଟି ପଡ଼ିଥିଲା, ସେ ଗୋଡ଼ଟି ଭାଙ୍ଗିଗଲା । ମୁଁ ସେ ଗୋଡ଼ଟାରେ ତେଲକନା ଗୁଡ଼େଇ ଦେଲି । ଦୈବଯୋଗକୁ ବାଝିଆଟି ପଡ଼ଶାଘର ଚୁଲିମୁଣ୍ଡରେ ଶୋଇଥିଲା, ସେ କନାରେ ନିଆଁ ଲାଗିଗଲା । ବାଝିଆଟି ଅସ୍ତବ୍ୟସ୍ତ ହୋଇ ଜଣକ ଭଣ୍ଡାରରେ ପଶିଗଲା । ଭଣ୍ଡାରୁ ନିଆଁ ଡେଇଁ ଗୃହଲରେ ଲୋଟିଗଲା । ଘଣ୍ଟାକେ ସାଇ ପଡ଼ଶାଙ୍କ ଘର ନାରଖାର ହୋଇଗଲା । ବହୁତ କଷ୍ଟରେ ନିଆଁ ଲିଭିଲା । କାଲି ସେ କଥା ଜଣାପ ହେଲା । ଭଲଲୋକମାନେ ମତେ ଡାକିଲ କଲେ । ଗାଁମାନ ଘର ମୁଁ ତୋଳେଇ ଦେବ । ଯେତେ ଟଙ୍କା ଖରଚ ହେବ, ମୁଁ ଦେବ । ମୁଁ ଏତେ ଟଙ୍କା ଦେଲାବେଳକୁ ମୋ ସମ୍ପତ୍ତିରୁ ଅଧେ ଉଡ଼ିଯିବ । ମତେ କିଛି ବୁଦ୍ଧି ବାଟ ଦିଶୁ ନାହିଁ । ମୁଁ ଯାଉଥିଲି ରଜାଙ୍କ ଆଗରେ ଗୁହାରି କରିବାକୁ । ଫେର୍ ବିଚାରିଲି, ରଜା ଗାଁଲୋକଙ୍କ କଥା ନ ମାନି ମୋ କଥା କଣ ମାନିବେ ? ଏ କଥା ମନେ ପଡ଼ିଲାରୁ ଏଠେଇଁ ବସିଛି । ମତେ ଯେ ଏଥିରୁ ଉଦ୍ଧାରି ଦବ, ମୁଁ ତାକୁ ଅନେକ ଟଙ୍କା ଦେବି' । ମହାଜନପୁଅ କହିଲା, 'ଅଚ୍ଛା, ଯେବେ ଘର ତୋଳେଇବା ଖର୍ଚ୍ଚ ତୁମକୁ ଦବାକୁ ନ ପଡ଼ିବ, ତେବେ ତୁମେ କଣ ଦବ' ? ଧନୀ କହିଲା, ମୁଁ ପାଞ୍ଚ ଶହ ଟଙ୍କା ଦେବି' । ମହାଜନପୁଅ କହିଲା, ଯା, 'ଗାଁ ମହାଜନମାନଙ୍କୁ ଡାକି ଗାଁ ଦାଣ୍ଡରେ ବସାଅ, ମୁଁ ଯାଉଛି' । ମହାଜନପୁଅ ସେ ଗାଁକୁ ଗଲା ବେଳକୁ ଗାଁ ଲୋକେ ଦାଣ୍ଡରେ ବସିଛନ୍ତି ।

ମହାଜନପୁଅ ନିଶାପ କରିବ ବୋଲି ଆସିଛୁ, ତା ଆଗରେ ଗାଁଲୋକେ ସବୁ କଥା କହିଲେ । ମହାଜନପୁଅ କହିଲା, 'ବିରାଡ଼ି ଗୋଡ଼ରେ ନିଆଁ ଲାଗିବାରୁ ବିରାଡ଼ି ପଳେଇଗଲା । ପଳେଇଲାରୁ ଘର ପୋଡ଼ିଗଲା । ସମସ୍ତେ କହୁଛ, ଯେଉଁ ଗୋଡ଼ରେ ନିଆଁ ଲାଗିଲା, ତାର ଦୋଷ । ଆଚ୍ଛା, ମୁଁ ପଚାରୁଛି, ଯେବେ ବିରାଡ଼ିର ଚାଲିବାର ଶକ୍ତି ନ ଥାନ୍ତା, ତେବେ ବିରାଡ଼ି ପଳେଇଥାନ୍ତା କିପରି ? ଖୋଟା ଗୋଡ଼ରେ ତ ବିରାଡ଼ି ଚାଲି ପାରି ନ ଥାନ୍ତା ! ଆର ତିନି ଗୋଡ଼ ଥିବାରୁ ସିନା ବିରାଡ଼ି ପଳେଇଲାରୁ ଘରେ ନିଆଁ ଲାଗିଲା ! ଏଥିରେ ଆର ତିନି ଗୋଡ଼ର ଦୋଷ କି ଖୋଟା ଗୋଡ଼ର ଦୋଷ' ? ଗାଁଯାକ ସମସ୍ତେ ଶୁଣି ଅବାକାବା ହୋଇଗଲେ । ଏଥିକି କି ଉତ୍ତର ଦେବେ, କିଛି ବାଟ ଦିଶିଲା ନାହିଁ । ଶେଷକୁ ସମସ୍ତେ କହିଲେ, 'ଆର ତିନି ଗୋଡ଼ର ଦୋଷ । ସେଥିରେ ଆର ତିନି ଭାଇଙ୍କ ଉପରେ ଡାଇଲି ଗିରିଲା । ଆର ତିନି ଭାଇ ଗାଁଯାକ ଘର ତୋଳେଇ ଦେବେ ବୋଲି ତାଙ୍କ ଉପରେ [illegible] । ଏହା ଦେଖି ଆର ଭାଇଟି ଖୁସି ହୋଇ ମହାଜନପୁଅକୁ ପାଞ୍ଚଶହ ଟଙ୍କା ଦେଇ ଖାଇବାକୁ ସିଧା ସମଗ୍ରୀ ଦେଇ ଠିକଣାକୁ ବିଦା କଲା । ସଭି ବଡ଼ ଭାଇ ମଜୁସାକୁ ବସେଇ ଯାଇଥାଏ ଆଉ ଆଡ଼େ । ସେ ଭାଇ ପାଠ ଶାଠରେ ବଡ଼ ଟାଣୁଆ । ଯାଉଁ ଯାଉଁ ସେ ଦେଶର ରଜାଙ୍କ ମନ୍ତ୍ରିଘରେ କାନ୍ଦବୋବାଳି ପଡ଼ିଛି । ମହାଜନପୁଅ ସମସ୍ତଙ୍କୁ ପଚାରିଲାରୁ ସମସ୍ତେ କହିଲେ, 'ଆମ ରଜା ଆଜି ସକାଳେ ମନ୍ତ୍ରିଙ୍କି ଡାକିଲେ ହୁକୁମ ଦେଇଛନ୍ତି, ରଜାଙ୍କର ଏକଦନ୍ତା ହାତୀଟା କେତେ ଓଜନ, ଏ କଥା ଯେବେ ମନ୍ତ୍ରୀ କହି ନ ପାରିବେ, ତେବେ କାଲି ସକାଳେ ମନ୍ତ୍ରିଙ୍କ ମୁଣ୍ଡକଟା ହେବ । ଏ ଅସମ୍ଭବ କଥା ସତେ ମନ୍ତ୍ରୀ କହିବେ ଯେ ବର୍ତ୍ତିବେ । ଏଥିପାଇଁ ମନ୍ତ୍ରିଙ୍କ ଘରେ କାନ୍ଦବୋବାଳି ପଡ଼ିଛି' । ମହାଜନପୁଅ ମନ୍ତ୍ରିଙ୍କ ପାଖକୁ ଖବର ଦେଲା । ମନ୍ତ୍ରୀ କହିଲେ,

ଏ ହାତୀକୁ ଓଜନ କରିଦେଲେ ମୁଁ ତୁମ୍ଭଙ୍କୁ ହଜାରେ ଟଙ୍କା ଦେବି । ମହାଜନପୁଅ ଗୋଟିଏ ଡଙ୍ଗା ଆଣେଇବାକୁ ମନ୍ତ୍ରୀଙ୍କି କହିଲା । ଡଙ୍ଗା ଆସିଲା । ଡଙ୍ଗାରେ ହାତୀକୁ ନେଇ ଠିଆ କରେଇଲେ, ଡଙ୍ଗା କେତେ ହାତେ ବୁଡ଼ିଗଲା । ମହାଜନପୁଅ ସେଠିଁ ସେଠିଁ ଫୁଲଖଡ଼ିରେ ଗୋଟିଏ ଗାର କାଟି ଦେଲା । ହାତୀକୁ ଡଙ୍ଗାରୁ ଓହ୍ଲେଇ ଦବାରୁ ଡଙ୍ଗା ଫେର ଉପରକୁ ଉଠିଗଲା । ମହାଜନପୁଅ କହିଲା, 'ଏ ଗାର ବୁଡ଼ିବାଯାଏ ଏ ଡଙ୍ଗାରେ ବାଲି ଭର୍ତ୍ତି କର ।" ଗାର ବୁଡ଼ିଲାରୁ ସେ ବାଲିତକ ଡଙ୍ଗାରୁ କାଢି ଓଜନ କଲାରୁ ଶହେ ମହଣ ହେଲା । ମନ୍ତ୍ରୀ ଏକଥା ଦେଖି ଭାରି ଖୁସି ହେଲେ । ମହାଜନପୁଅ ଟଙ୍କା ହଜାରକ ଆଉ ସିଧା ସାମଗ୍ରୀ ଭିନ୍ନ ଯାନ ବାହାନ ପାଲିଙ୍କି ପାଠଛଡ଼ାରେ ଠିକଣାକୁ ଆସିଲା । ରନ୍ଧାବଢ଼ା ହେଲା, ସମସ୍ତେ ଖାଇପିଇ ସାରିଲେ, ମଜୁସା ଗୁରୁ ପୁତୁରା, ଗୁରୁ ବୋହୂଙ୍କୁ ପାଖକୁ ଡାକିଲେ । ଦ' ସାନ ପୁଅ ଦ'ସାନ ବୋହୂଙ୍କୁ ସବୁ ପୁଅଙ୍କ ରୋଜଗାର ଶୁଣେଇ ଦେଲେ, ପଚାରିଲେ, 'ଯେବେ ଏଥରକ ଭିନେ ହବାର ଇଚ୍ଛା ଅଛି, କୁହ, ମୁଁ ଯାଇ ଯେଝା ଭାଗ ଯେଝାକୁ ବାଣ୍ଟି ଦେଇ ଆସିବି ।' ସାନ ଦ' ପୁଅ, ସାନ ଦ' ବୋହୂ ଆପଣା ଅଯୋଗ୍ୟପଣିଆ ବୁଝି ପାରିଲେ; ବଡ଼ ଦ' ଭାଇ, ବଡ଼ ଦ' ଭାଉଜଙ୍କ ଗୋଡ଼ତଳେ ଲମ୍ବ ହେଇ ପଡ଼ିଲେ । ଆଉ ଭିନେ ହେବେ କଣ ? ଘରକୁ ସମସ୍ତେ ଆନନ୍ଦରେ ଫେରି ଗଲେ । ସେହି ଦିନୁ କଳି କଜିଆ ନ କରି ପୁଅ ବୋହୂଏ ସୁଖରେ ମିଳି ମିଶି ଘର ଦୁଆର କରି ରହିଲେ ।

# ମହାଜନଙ୍କ ପୁଅ ବୋହୂ ।

ଏକ ରାଇଜରେ ଜଣେ ମହାଜନ ଥାଏ, ତାର ଅଚଳାଚଳ ସମ୍ପତ୍ତି । ମହାଜନର ଗୋଟିଏ ପୁଅ, ଗୋଟିଏ ବୋହୂ । ମହାଜନ ଅସି ବୁଢ଼ା ହେଲା । ମହାଜନଘରଣୀ ଦିନେ ମହାଜନକୁ କହିଲା, "ଆମେ ତ ଅସି ବୁଢ଼ା ବୁଢ଼ୀ ହେଲୁଁ । ଦିନାକେତେ ଗଲେ ଘର ଦୁଆର ଛାଡ଼ି ଚାଲି ଯିବା । କିଛି ସାଙ୍ଗରେ ନେଇ ଯିବା ନାହିଁ । ରାଇଜରେ ଗୋଟିଏ କିଛି କୀର୍ତ୍ତି ରଖିଲେଇଁ ନାହିଁ । ପାଠରେ ପଢ଼ି ଅଛୁ, 'ଯାହା ଖାଇଯିବ ପେଟକୁ, ଯାହା ଦେଇଯିବ ବାଟକୁ, ଯାହା ରଖିଯିବ ଖଣ୍ଟକୁ ।" ପଛକୁ ବୁଢ଼ା ବୁଢ଼ୀ ଦିହେଁ ବିଚାରବିଚାର ହୋଇ ଥିର କଲେ—ଗୋଟିଏ ବଡ଼ ପୋଖରୀ ଖୋଳାଇବେ । କେତେ ଲୋକ ଶୋଷିଙ୍କ ନିଶ୍ୱାସ ରହିବ । ଅଡ଼ ଦୀର୍ଘ ଦି' କୋଶ ଏକାନ୍ତରେ ଗୋଟିଏ ପୋଖରୀ ଖୋଳାଗଲା । କେତେ ମୂଲିଆ ଲାଗିଲେ । ଖୋଳୁ ଖୋଳୁ ବାର ବରଷ ବିତି ଗଲା, ପୋଖରୀରେ ପାଣି ପଡ଼ିବାକୁ ନାହିଁ । ମହାଜନ ଭାରି ବ୍ୟସ୍ତ ଥାଏ । ଏତେ ପଇସା ଖରଚ ହେଲା, ଯେବେ ପୋଖରୀରେ ପାଣି ନ ପଡ଼ିଲା, ତେବେ ପୋଖରୀ ଖୋଳାଇ କେତେ, ନ ଖୋଳାଇ କେତେ ? ଇମିତ ବଡ଼ ଭାବନାରେ ଥାଏ । ଦିନକରେ ଜଣେ ବାବାଜୀ ଅସି ସେଠେଇଁ ପହଞ୍ଚିଲେ । ମହାଜନ ଦିନାକେତେ ବାବାଜୀଙ୍କି ବହୁତ ଅନୁସରଣ କଲା । ପଛକୁ ବାବାଜୀଙ୍କ ଦୟା ହେଲା । ବାବାଜୀ କହିଲେ, "ତୋ ବୋହୂକୁ ଏଠେଇଁ ବଳି ଦେଲେ ପୋଖରୀରେ ପାଣି ପଡ଼ିବ ।" ମହାଜନ ବିଚାରି ମହରଗରୁ ଯାଇଁ କାନ୍ତାରରେ

ପଡ଼ିଲା । ଏଣେ ମାଇଲେ ଗୋହତ୍ୟା, ତେଣେ ମାଇଲେ ବ୍ରହ୍ମହତ୍ୟା । ଏତେ ପଇସା ଖର୍ଚ୍ଚ କରି ପୋଖରୀ ଖୋଳୁଛନ୍ତି, ସେଥିରେ ପାଣି ନ ପଡ଼ିଲେ ତାହାଁ ଦୋଷ । ଏଣେ ପେର ଗୋଟିଏ ପୁଅକୁ ଗୋଟିଏ ବୋହୂ, ବୋହୂ ପିଲାଟି କେତେ ଗେଲବସରରେ ବଢ଼ିଛନ୍ତି, ବୋହୂକୁ ବଳି ଦବାକୁ କେମିତି ସତ ବଳିବ ? ପଛକୁ ଅତି କଷ୍ଟରେ ବାବାଜୀଙ୍କ କଥାରେ ମଙ୍ଗିଲା । ତାହାଁ ଅବଦନ ବୋହୂକୁ ବଳି ଦବାର ଠିକ ହେଲା । ବୋହୂ ଘାଟର ଯୋଉଲୀଏ ଏ କଥା ଶୁଣିଲେ, ଯାଇଁ ବୋହୂକୁ ଏ ସମାଚାର କହିଲେ । ବୋହୂ ମନେ ମନେ ବିଚାରିଲା, 'ଯାହା ମୋ କରମରେ ଥିବ ହବ, ସେଥିପାଇଁ ଭାବନା କରିବି କିଆଁ ? ଦିନେ ତ ମରିବି, କାଲି ମଲେ କେଡ଼େ କୀର୍ତ୍ତି ବହିବ । ଯାହାହେଉ, ଆଜ ସାତ ତିଅଣ ଆଠ ଭଜା କରି ଶାଶୁ ଶଶୁରଙ୍କୁ, ଗେରସ୍ତକୁ ମନବୋଧ କରି ଖାଇବାକୁ ଦେବି ।' ଚଞ୍ଚଳ ଚଞ୍ଚଳ ଅଡ଼ୁତ ପଦ ସାରି ହାଣ୍ଡିଶାଳକୁ ଗଲା । ସାତ ତିଅଣ ଆଠ ଭଜା, ଖିରି ପିଠା, କେତେ ପଦାର୍ଥ ତିଆରି କଲା । ଶଶୁର ବୁଢ଼ାଙ୍କୁ ମନବୋଧ କରି ଖାଇବାକୁ ଦେଲା । ପଛକୁ ମହାଜନପୁଅ ଆସିଲା ଖାଇବାକୁ । ଖାଇବାକୁ ଦେଲାବେଳେ ଗେରସ୍ତକୁ କହିଲା, "ଯେତିକି ଆଜ ଦିନକ ମୋ ହାତରେ ଖାଉଥାଅ, କାଲିକି ମୁଁ ନୂଆ ପୋଖରୀରେ ବଳି ପଡ଼ିବି ।" ମହାଜନ ପୁଅ ଏ କଥା ଶୁଣି ଅବାକାବା ହୋଇଗଲା । କିଛି ବୁଦ୍ଧି ସ୍ଫୁରିଲା ନାହିଁ । ରାତି ହେଲାରୁ ଘୋଡ଼ାଶାଳରୁ ପକ୍ଷିରାଜ ଘୋଡ଼ାଟିଏ ବାଛି ଆପେ ଗୁରି ହତିଆର ବାନ୍ଧି କିଛି ଠଙ୍କାଟୋକରି ସାଙ୍ଗରେ ନେଇ ଭାରିଯା ପାଖରେ ପହଞ୍ଚିଲା । ତାକୁ ଆଗରେ ବସାଇ ଘୋଡ଼ା ମାଡ଼ି ଦେଲା । ଯାଉଁ ଯାଉଁ ଉଦୁଉଦିଆ ଦି'ପହରବେଳେ ଗୋଟିଏ ବନସ୍ତରେ ପହଞ୍ଚିଲେ । ମହାଜନପୁଅ ଗୋଟିଏ ଗଛ ଉପରେ ଚଢ଼ି

ଦେଖେ ଯେ, ଗୋଟିଏ ବଡ଼ ଗାଁ, ସେ ଗାଁରେ ବଡ଼ ବଡ଼ ନଅର
ବଗିଚ୍ଚ କୋଠା ଅଛି । ହେଲେ କଣ ହବ, ଜନ ପ୍ରାଣୀ କେହି ଦିଶୁ
ନାହାନ୍ତି । ଭଉଯାକୁ ସାଙ୍ଗରେ ନେଇ ଯାଇ ସେ ଗାଁରେ ପହଞ୍ଚିଲା ।
ବାଛି ବାଛି ଗୋଟିଏ ଦିବ୍ୟସୁନ୍ଦର ଖଞ୍ଜାଇ ତାକୁ ରଖି ବଣକୁ
ବୁଲିବାକୁ ବାହାରିଛି, ଅଗରେ ଆସି ଏକ ଅସୁର ଓଗାଳିଲା । ଏ
ଯେଉଁ ଘରେ ଭଉଯାକୁ ଛାଡ଼ିଛି, ସେ ଘର ସେ ଅସୁରର । ସେ
ଅସୁର ଗାଁଯାକ ଲୋକଙ୍କୁ ଖାଇ ପଦା କରି ସାରିଲଣି । ତା
ଦାଉରେ ସେ ଗାଁ ମଶାଣିଠାରୁ ବଳିଲଣି । ସ୍ୟାକୁ ଦେଖି ଖାଇବାକୁ
ଆଁ କରି ଦଉଡ଼ିଲା ଅଇଲବେଳକୁ ମହାଜନପୁଅ ହତଅର ବାହାର
କରି ସେ ଅସୁରକୁ ହାଣିବାକୁ ବସିଲା । ସ୍ୟାଠେଇଁ ଏତେ
ହାତହତଅର ଅଛି ବୋଲି ସେ ଅସୁରକୁ ଜଣା ନ ଥିଲା ।
ମହାଜନପୁଅକୁ ସିନା ଖାଇବାକୁ ଅଣ୍ଟା ବାନ୍ଧିଥିଲା, ଏବେ ଅପଣା
ଜୀବନ ଉପରେ ପଡ଼ିଲା । କିଛି ଉପାୟ ନ ଦେଖି ମହାଜନପୁଅ
ଅଗରେ ଲମ୍ବ ହେଇ ଗୋଡ଼ତଳେ ପଡ଼ିଲା, କହିଲା "ମହାତ୍ମା, ମୁ
ଜାଣିଲଣି ମୋ ବଧ ତୋହର ହାତରେ, ଏବେ ମୁଁ ନେହୁରା
ହେଉଛି, ମତେ ସାତଦିନ ରଖ, ସାତ ଦିନ ବାଦ ହାଣିବୁ ।
ମୁଁ ତୋର କିଛି କରିବି ନାହିଁ । ମତେ ଗୋଟିଏ ଘରେ
କୋଲପ ପକେଇ ରଖ । ସାତଦିନ ବାଦ ଯାହା ଇଛା ତାହା
କରିବୁ ।" ମହାଜନପୁଅ ଅଲଅଲ ଘର ପିଲା, ବଡ଼ ଦୟାବନ୍ତ ।
ଅସୁରକୁ ନେଇ ଗୋଟିଏ ଘରେ କୋଲପ ପକେଇ ରଖି ବଣକୁ
ବାହାରିଲା । ଭଉଯା ଜମା ସବୁ ଘର କୁଣ୍ଢିଯାକ ଦେଇଗଲା ।
ଅସୁର କଥା କହିଲା ନାହିଁ, ଯେଉଁ ଘରେ ଅସୁର ଥାଏ, ସେ ଘର
ଦେଖେଇ କହିଲା, 'ସବୁ ଘର ଫିଟେଇବୁ, ଏ ଘର ଫିଟେଇବୁ ନାହିଁ'
ସ୍ୟା କହି ମହାଜନପୁଅ ବଣକୁ ଗଲା । ଏ ତ ମାଇପି ଜାତି, ମନେ

ମନେ ବାଗୁଡ଼ିଲା, ସବୁ ଘର ଫିଟେଇବାକୁ କହିଲା, 'ଏ ଘରଟି କିଆଁ
ମନା କଲ, କିଛି ଭଲ ଜିନିଷ ରଖିଛ, ମତେ ଲୁଚେଇଛ ।' ସ୍ତ୍ରୀ ବାଗୁଡ଼ି
ସେ ଘର ଫିଟେଇ ଦେଖେ ଯେ, ଅସୁର ବସିଛି । ଅସୁର ଏ
ବୋହୂକୁ ଦେଖି କହିଲା, 'ମୋର ଏ ତ ଗାଇଜ, ଏତେ ସମ୍ପଦ
ଏତେ କଥା ଭୋଗ କରିବାକୁ ମୁଁ ଏକା । ତୁ ମୋ ସାଙ୍ଗରେ
ରହିଲେ, ଦି'ଜଣଯାକ ସୁଖରେ ରହିବା ।' ମହାଜନବୋହୂ ଏ
କଥା ଶୁଣି ପଛଘୁଞ୍ଚା ଦେଲା, ଗେରସ୍ତ କଥା ବାଗୁଡ଼ିଲା, କେତେ ଘୁଞ୍ଚ
ପୃଷ୍ଠ ହେଲା । ପଛକୁ ଜଣେ ପାଞ୍ଚିଲା, ଅସୁର ସାଙ୍ଗରେ ଘରଦୁଆର
କରି ରହିବ ବୋଲି କହିଲା । ଅସୁର କହିଲା, 'ତୋ ଗେରସ୍ତକୁ ନ
ମାରିଲେ ଆମେ ତ ସୁଖରେ ରହି ପାରିବା ନାହିଁ । ସେ ତ ଆମର
କାଳ ହେବ ।' ମହାଜନବୋହୂ କହିଲା, 'ତେବେ ମତେ ଉପାୟ
ବତେଇ ଦେ, ମୁଁ ସେଇ ଉପାୟରେ ଗେରସ୍ତକୁ ମାରିବି, ତୁ ମୁଁ
ଦିହେଁ ସୁଖରେ ଏଠେଇଁ ଘର କରି ରହିବା ।' ଅସୁର କହିଲା, 'ତୁ
ଗୋଟିଏ କଥା କର । ମହାଜନପୁଅ ବନସ୍ତରୁ ଫେରି ଆସିଲା-
ବେଳକୁ ତୁ ଆଖିରେ କପୁରଗୁଣ୍ଡା ପକେଇ ଆଖିକି ପକଡ଼ ମକଡ଼
ରଙ୍ଗ କରି ବସିଥା, ଗେରସ୍ତ ଆସି ପଚାରିଲେ କହିବୁ, ମୋ ଆଖି
ଧରିଛି ! ସେ ଯେତେ ଉପାୟ ଦବ, କହିବୁ କେଉଁଥିରେ ଭଲ
ହେଲା ନାହିଁ । ପଛକୁ କହିବୁ ଯେ, ମୁଁ ପିଲା ହେଇଥିଲି, ଥରେ ଆଖି
ଧରିଥିଲା । ଯେତେ ଅଉ ଯେତେ ଉପାୟ କରି ଭଲ ହେଲା ନାହିଁ ।
ପଛକୁ ମୋ ବାପା ବାଘଦୁଧ ମୋ ଆଖିରେ ପକେଇ ଦେଲାରୁ
ଆଖି ଭଲ ହେଲା । ତୁମେ ମତେ ବାଘଦୁଧ ଆଣି ଦେଲେ ମୁଁ
ଆଖିରେ ପକେଇବି । ବାଘଦୁଧ ଆଣିଲାବେଳକୁ ତାକୁ ବାଘ
ଖାଇବ, ତୁ ମୁଁ ଆନନ୍ଦରେ ରହିବା ।' ସତକୁ ସତ ମହାଜନପୁଅ
କିଛି ଖାଇବା ସାମଗ୍ରୀ ଧେନି ଘରେ ପହଞ୍ଚିଲାବେଳ ଭାରିଯା କୁ

ଆଖି ଦହୁକି ରଙ୍ଗ କର ବସି ବାପକୁ ବାହୁନ କାନ୍ଦୁଛି । 'ମୋ ବାପା ଥିଲେ ବୋଲି ସିନା ମୋ ଆଖି ଭଲ ହେଇଥିଲା, ଆଉ କିଏ ମୋ ଆଖି ଭଲ କରିବ ?'

ମହାଜନପୁଅ ଆସି ଏ କଥା ଶୁଣି ପଚାରିଲାରୁ ପହିଲେ ସେ ନାହିଁ କଲା । କହିଲା, 'ତୁମେ ସୁକୁମାର ମଣିଷ, ତୁମକୁ ମୁଁ କେମିତି ବାଘମୁହଁକୁ ଛାଡ଼ିଦେବି ? ମୋ ଆଖି ପଛକେ ଫୁଟି ଯାଉ; ତୁମେ ବସିଥାଅ ।' ଏ କଥା ଶୁଣି ମହାଜନପୁଅ ଅହୁରି ଛନାଅ ହୋଇ ପଚାରିଲାରୁ ଅସୁର ଯିମିତି ଶିଖେଇଦେଇଥିଲା, ବୋହୂ ସିମିତି କହିଲା । ଟୋକା ବରାଇଲା, 'ଯାପାଇଁ ଏତେ ଦୁଃଖ ସହି ବନସ୍ତକୁ ଅସିଛି, ତାପାଇଁ ପ୍ରାଣ ପଛକେ ଯିବ, ମୁଁ ଯାଇଁ ବାଘଦୁଧ ଅଣିବି ।' ଅଖିଅ ଅପିଅ, ଫେର ଘୋଡ଼ାରେ ଚଢ଼ିଲା । ନିଯମ କରିଗଲା, 'ବାଘଦୁଧ ନ ଅଣିଲେ ମୁଁ ପାଣି ଛୁଇଁବ ନାହିଁ ।' ତରଲାଟା ବଡ଼ ଚତୁର । ତା ଶିର ଜଣ୍ଡି ଚଡ଼ୁ ଦଉଥାଏ । ମିଛରେ ମିଛରେ କେତେ ହାକୁଲେଇ ହେଲା, ସେରସ୍ତକୁ ମନା କଲା । ମହାଜନପୁଅ ତା କଥା ନ ମାନି ଏକଧ୍ୟାନରେ ଗଲା । ମହାଜନପୁଅ ଗଲାରୁ ଏ ମହାଜନ-ବୋହୂ କୋଳପ ଫିଟେଇ ଅସୁର ସାଙ୍ଗରେ ହସ ଖେଳରେ ମାତିଲା ।

ଏଣେ ମହାଜନପୁଅ ଯାଉଁ ଯାଉଁ ଦେଖିଲା, ଗୋଟିଏ ବଣରେ ବୃକ୍ଷପାଖରେ ନାଅଁ ଲାଗିଛି, ମଝିରେ ଯୋଡ଼ାଏ ବାଘଛୁଅ ପଡ଼ି ଛଟରେ ପଟର ହଉଛନ୍ତି । ମହାଜନପୁଅ ସେହିକ୍ଷଣି ଘୋଡ଼ା ମାରି ଦେଇ ନାଅଁକୁ ଡେଇଁପଡ଼ିଲା, ବାଘପିଲା ଦହୁଙ୍କି ଘେନି ଫେରି ଅସି ପଦାରେ ପହଞ୍ଚିଲା । ବାଘଛୁଅଙ୍କୁ ପାଣିରେ ଟୁଅ ଧୋଇ କରି ଟୋପିଏ ଲେଖାଏଁ ପାଣି ତାଙ୍କ ମୁହଁରେ ଦେଲା । ଖଣ୍ଡେଦୂର ବାଟ ଅସି ଢେଡ଼ାରୁ ଓହ୍ଲେଇଲା, ଘୋଡ଼ାକୁ ଗୋଟିଏ ଗଛମୂଳେ ବାନ୍ଧିଲା ।

ଘୋଡା ଉପରୁ ଗୃହଜାମା ଫିଟେଇ ଅଳ୍ପ ଗୋଟିଏ ଗଛମୂଳେ ପାରି
ଦେଲା, ସେଥିରେ ବାଘଛୁଆ ଦୁଇଟିଙ୍କୁ ବସେଇ ଆପେ ଶୋଇ
ପଡ଼ିଲା । ଏହି ସମୟରେ ବାଘ ବାଘୁଣୀ ଆସି ପିଲାଙ୍କୁ ବଣଯାକ
ଖୋଜି ଖୋଜି ଏଠେଇଁ ପହଞ୍ଚିଲେ । ବିଚାରିଲେ, 'ଆମ ପିଲାଙ୍କୁ ଏ
ମଣିଷ ଚୋରେଇ ନେଇ ପଳାଉଛି ।' ସ୍ୱା ମାଈ ମହାଜନପୁଅକୁ
ଖାଇବାକୁ ବସିଛି, ସେହି ସମୟରେ ବାଘଛୁଆ ମହାଜନପୁଅର
ସବୁ ଉପକାରଯାକ ବାପ ମାଙ୍କୁ କହିଲେ, ବାପ ମା ଶୁଣି ଭାରି ଖୁସି
ହେଲେ । ମହାଜନପୁଅ ଉଠିଲା ବେଳକୁ ବାଘ ବାଘୁଣୀ ତା ପାଇଁ
ଉତ୍ତମ ସୁନ୍ଦର ଖାଇବା ସାମଗ୍ରୀ, ଘୋଡାପାଇଁ ଦାନା ଘାସ ଆଣି
ମହାଜନପୁଅ ଗୋଡ଼ତଳେ ପଡ଼ିଲେ । ମହାଜନପୁଅ କହିଲା, 'ମୁଁ
ଯେଉଁ କଥାପାଇଁ ଆସିଛି, ତା ନ ହେଲେ ପାଣି ଛୁଇଁବି ନାହିଁ ।'
ବାଘୁଣୀ ଏ କଥା ଶୁଣି ଠିଆ ହେଲା, କହିଲା, 'ଯେତେ ଇଚ୍ଛା ସେତେ
ଦୁଧ ଦୁହିଁ ନିଅ ।' ମହାଜନପୁଅ ଆପଣା ତାଳରେ ତାଳେ ଦୁଧ ଦୁହିଁ
ରଖିଲା । ଆପେ ଟିକେ ଜଳଖିଆ କଲା, ଘୋଡ଼ାକୁ ଘାସ ଦାନା
ଖୋଇ ବାହାରିଲା । ବାହାରିଲା ବେଳକୁ ବାଘ ବାଘୁଣୀ ବହୁତ
ନେହୁର ହେଲେ, କହିଲେ, 'ଆମ ବଡ଼ ପିଲାଟିକି ତୁମ ସାଙ୍ଗରେ
ନେଇ ଯା, ତୁମେ ପିଲା ଦୁହିଙ୍କ ପ୍ରାଣ ରଖିଛ, ସେଥିରୁ ତୁମେ
ଗୋଟିଏ ସାଙ୍ଗରେ ରଖି ଥା, ଦିନେ ହେଲେ ଏ ବହୁତ କାମରେ
ଆସିବ ।' ମହାଜନପୁଅ ବାଘପିଲାଟିକି ସାଙ୍ଗରେ ନେଇ ଘରକୁ
ଫେରିଲା, ଭାରିଯାକୁ ନେଇ ବାଘଦୁଧ ଦେଲା । ବହୁତ ମିହନ୍ତ କରି
ଆସିଥିଲା, ଯିମିତି ଘରେ ପହଞ୍ଚିଲା, ସିମିତି ଶୋଇ ପଡ଼ିଲା । ମହାଜନ-
ପୁଅ ଶୋଇଲାରୁ ମହାଜନବୋହୂ ଯାଇ ଅସୁରକୁ ବାଘଦୁଧ ଆଣିବା
କଥା କହିଲା । ଅସୁର କହିଲା, 'ତୁ କହୁ, ମୋ ଆଖି ବାଘଦୁଧରେ
ଭଲ ହେଲା ନାହିଁ, ପୁଣି ବନ୍ଧିଲାଣି; ଇମିତି ଛଟା ଗାଳି ବାଡ଼େଇ

କରୁଛି ହୋ । ସେ ପଣ୍ଡିତଙ୍କଠୁ ଶୁଣିଛି ଯେ ପିଲାଦିନେ ମତେ ବାପା କହିଥିଲେ, ଯେବେ ଫେର ତୋ ଆଖି ଧରିବ, ଫେର ବାଘଦୁଧ ପକାଇଲେ ଭଲ ନ ହେବ, ତେବେ ଦେବକୁଣ୍ଡରୁ ଅମୃତପାଣି ଟୋପାଏ ଆଣି ପକାଇ ଦେଲେ ଭଲ ହେବ, ନଇଲେ ଆଖି ଫୁଟିଯିବ । ଦେବକୁଣ୍ଡ ସ୍ୱର୍ଗରେ, ସେଥିରେ ସବୁବେଳେ ଦେବତାମାନେ ଜଗିଅଛନ୍ତି । ସେଠିକି ମଣିଷ ଗଲେ ଆଉ ବର୍ତ୍ତି ଆସିବ ନାହିଁ, ଦେବତାମାନେ ମାରି ପକାଇବେ । ତୋ ଗେରସ୍ତ ସେଠିକି ଗଲେ ଆଉ ଫେରିବ ନାହିଁ । ଆମର ଦିହେଁ ଆନନ୍ଦରେ ଘର ଦୁଆର କରି ନିଶ୍ଚିନ୍ତରେ ରହିବା ।' ଦିନେ ଦ'ପହର ଗଲାରୁ ମହାଜନବୋହୂ ଫେର ଛଟା ଗାଳି ଅସୁର ଆଗରୁ ଯିମିତ ଶିଖାଇଥିଲା, ସିମିତ କହିଲା । ମହାଜନପୁଅ ଅମୃତପାଣି ଆଣିବ ବୋଲି ଘରୁ ବାହାରିଲା । ଯାଉଁ ଯାଉଁ ବାଟରେ ଦ'ପହର ହେଲା । ଗୋଟିଏ ଗଛମୂଳେ ଘୋଡାକୁ ବାନ୍ଧି ଦେଇ ଖରା ବରଷା ପାଳିବ ବୋଲି ସେ ଗଛମୂଳେ ରହିଲା । ଆଗରେ ଏକ ଗଛ, ସେ ଗଛରେ ଯୋଡ଼ିଏ ଗଣ୍ଡଭୈରବ ଚଢ଼େଇଙ୍କର ବସା । ସେ ଚଢ଼େଇ ଅସ୍ତି ମରିବାକୁ ହେଲେଣି, ତାଙ୍କର ଗୋଟିଏ ସୁଦ୍ଧା ଛୁଆ ରହିଲା ନାହିଁ । ଚଢ଼େଇ ଦିହେଁ ଅଧାର ଖୋଜିବାକୁ ଯାନ୍ତି, ଆସି ଦେଖନ୍ତି ଯେ ଛୁଆ ନାହାନ୍ତି । ସେ ଦିନ ମହାଜନପୁଅ ପହଞ୍ଚିଲା ବେଳକୁ ଚଢ଼େଇ ଦିହେଁ ଯାଇଛନ୍ତି ଅଧାର ଖୋଜି । ମହାଜନପୁଅ ଦେଖିଲା ଯେ ଗଛମୂଳରୁ ଗୋଟିଏ ଅହିରାଜ ସାପ ବାହାରି ସେ ଗଛ ଉପରକୁ ଚଢ଼ିଲା । ଗଛ ଉପରେ ଚଢ଼େଇ ଛୁଆ ଯୋଡ଼ିକ ସାପକୁ ଦେଖି କେଁ କାଁ ହେଲେ । ମହାଜନପୁଅ ସେ ସାପକୁ ଦେଖେଇ କାଣ୍ଡ ବିନ୍ଧି ଦେଲା । ସାପ ଗଛରୁ ଖସି ପଡ଼ିଲା । ଖୋଳରୁ ଖଣ୍ଡା ବାହାରି କରି ସାପକୁ ତିନି ଗଡ଼ କରି କାଟି ଅଗଣା ଡାଳ ତଳେ ଘୋଡ଼େଇ ଶୋଇ ପଡ଼ିଲା । ଶୋଇଛି, ଏତିକି ବେଳେ

ବୁଢ଼ା ଚଢ଼େଇ ଆସି ପହଞ୍ଚିଲେ । ବାପ ମାଙ୍କୁ ଦେଖି ଚଢ଼େଇଛୁଆ କହିଲେ, 'ଆମକୁ ଆଧାର ଦେବ କିଏ ? ଯେ ଗଛମୂଳେ ଶୋଇଛି, ସେ ଆମ ଜୀବନ ରଖିଛି, ତା କଥା ଆଗେ ବୁଝ ।' ବାପମାଙ୍କୁ ଛୁଆ ଦିହେଁ ସବୁ କଥା କହିଲାରୁ ଚଢ଼େଇ ଦିହେଁ ସେହିକ୍ଷଣି ଗଲେ, ଯାଇ ମହାଜନପୁଅ ପାଇଁ ଖାଇବା ସାମଗ୍ରୀ, ଘୋଡ଼ାପାଇଁ ଦାନା ଘାସ ଆଣି ପହଞ୍ଚିଲେ । ମହାଜନପୁଅ ଉଠିଲାବେଳକୁ ଲମ୍ବ ଲମ୍ବ ହୋଇ ତା ଗୋଡ଼ତଳେ ପଡ଼ିଲେ । ଜଳଖିଆ କରିବାକୁ ତା ସଙ୍ଗରେ ଅତି ଜିଗର କଲେ । ମହାଜନପୁଅ କହିଲା, 'ମୁଁ ଯେଉଁ ଦେବକୁଣ୍ଡରୁ ଅମୃତପାଣି ପାଇଁ ଆସିଛି, ତା ହାତରେ ନ ଧଇଲେ ପାଣି ଛୁଇଁବି ନାହିଁ' । ବୁଢ଼ା ଚଢ଼େଇ କହିଲା, 'ସେଠାରୁ ଅମୃତପାଣି ଆଣିବା ସହଜ କଥା ନୁହେ । ତୁମେ ଯେତେବେଳେ ଆମ ପିଲାଙ୍କୁ ବଞ୍ଚେଇଛ, ଆମକୁ ଯାହା କହିବ, ତାହା କରିବୁଁ । ତୁମେ ଖାଇ ପିଇ ସୁସ୍ଥରେ ରହ । ଆଗେ ମୁଁ ଯାଉଛି । ଯେବେ ତିନି ଦିନ ଭିତରେ ନ ଫେରିବି, ତେବେ ଜାଣିବ ଯେ ମତେ ଦେବତାଙ୍କ ଜଗୁଆଳ ମାରି ପକାଇଲେ । ତିନି ଦିନ ବାଦ ଅମୃତପାଣିପାଇଁ ବୁଢ଼ୀ ଯିବ । ସେ ଫେରି ନ ଆସିଲେ ପିଲାଏ ଯିବେ, ଯେଣିକି ତୁମ କପାଳ ।' ଏୟା କହି ବୁଢ଼ା ଚଢ଼େଇ ଗଣ୍ଡେ ତାଳରେ ସାତ ହଜାର ହାତ ଦଉଡ଼ି ଲଗେଇ ନେଇଗଲା । ସାତ ଦିନ ଉଡ଼ି ଉଡ଼ି ଯାଇ ସେ ଦେବକୁଣ୍ଡ ପାଖରେ ପହଞ୍ଚିଲା । ପାଖରେ ଜଗିଲେ ଦେବତା ଯାକ ହାଣି ପକେଇବେ ବୋଲି ସାତ ହଜାର ହାତ ଉପରେ ଉଡ଼ୁଥାଏ । ଦି'ପହରବେଳେ ଜଗୁଆଳଯାକ ଖାଇସାରି ଟିକିଏ ଢୁଲେଇ ପଡ଼ିଲେ । ସେତିକି-ବେଳେ ବୁଢ଼ା ଚଢ଼େଇ ଧୀରେ କରି ସେ ଦଉଡ଼ିକି ଧରି ତାଳଟିକି କୁଣ୍ଡ ଭିତରକୁ ଛାଡ଼ି ଦେଲା । ତାଳରେ ପାଣି ଭର୍ତ୍ତି ହେଲାରୁ ଦଉଡ଼ିକି ଓଟାରି ତାଳକୁ ଟେକି ନେଲା । ଅମୃତପାଣି ତାଳକୁ

ଥଣ୍ଟରେ ଘିନା ଉଡ଼ି ଆସି ମହାଜନପୁଅ ପାଖରେ ପହଞ୍ଚିଲା । ମହାଜନ-
ପୁଅ ଘରକୁ ବାହାରିଲା ବେଳକୁ ଚଢ଼େଇ ଦୁହେଁ ଅତି ଆଦର
କରି କହିଲେ, 'ତୁମେ ଆମ ଦୁ ପିଲାଙ୍କୁ ବଞ୍ଚେଇଛ, ଗୋଟିଏ ଛୁଆ
ତୁମ ସାଙ୍ଗରେ ରଖ । ଦିନେ ହେଲେ ଏ ତୁମ କାମରେ ଆସିବ ।'
ଆଗରୁ ତ ମହାଜନପୁଅ ସାଙ୍ଗରେ ବାଘଛୁଆଟି ଥାଏ । ମହାଜନପୁଅ
ବାଘଛୁଆକୁ ଆଉ ଏ ଗଣ୍ଡଭୈରବ ଚଢ଼େଇଛୁଆକୁ, ଦୁହିଙ୍କି ସାଙ୍ଗରେ
ନେଇ ଘରକୁ ଫେରିଲା ! ବାଟରେ ଏକ ରଜାର ରାଇଜ ପଡ଼ିଲା ।
ସେ ରଜାର ଝିଅ ଅମର ବର ପାଇବ ବୋଲି ମହାଦେବଙ୍କ ପାଖରେ
ବାର ବରଷ ତପସ୍ୟା କରିଥାଏ । ମହାଦେବ ତାକୁ ବର ଦେଇଥାନ୍ତି,
'ତୁ ନିଶ୍ଚେ ଅମର ବରଟିଏ ପାଇବୁ । ହେଲେ କଣ ହେବ, ପହିଲେ
ଗୋଟିଏ ମଲା ମଣିଷ ମିଳିବ । ସେ ମଣିଷକୁ ତୁ ଜୀବଦାନ ଦବୁ ।
ସେ ବଞ୍ଚିଲାରୁ ତୁମେ ଦୁହେଁ ଅମର ହୋଇ ଘର ଦୁଆର କରିବ ।'
ରଜାଝିଅକୁ କାକଚରିତ୍ର ଜଣା । ମହାଜନପୁଅ ଆସି ତା ରାଇଜରେ
ପହଞ୍ଚିଲା ବେଳକୁ ରଜାଝିଅ ଜାଣିଲା ଯେ ଆଜି ତାକୁ ବର ମିଳିବ ।
ରଜାଝିଅ ଗାଧୋଇ ପାଧୋଇ କୋଠା ଉପରେ ଖରା ପୋଉଁଛି,
ଏତିକି ବେଳେ ଖଣ୍ଡେ ଦୂରରେ ବରଗଛ ପାଖରେ ମହାଜନପୁଅ,
ବାଘଛୁଆ, ଗଣ୍ଡଭୈରବ ଚଢ଼େଇଛୁଆ ଯାଇ ପହଞ୍ଚିଲେ । ରଜାଝିଅ
ମହାଜନପୁଅକୁ ଦେଖି କାକଚରିତ୍ର ଗଣି ଜାଣି ପାରିଲାଣି, ଏ ତାର
ବର । ଯୁଆ ଭାଇଯା ଅସୁର ସାଙ୍ଗରେ ମିଳି ଯୁଆକୁ ହାଣି ପକେଇବ ।
ସିପାଇଲୋକ ପଠେଇ ମହାଜନପୁଅକୁ ଡାକି ଆଣିଲା, କହିଲା, 'ମତେ
ବିଭା ହୁଅ ।' ମହାଜନପୁଅ 'ନାହିଁ' କଲାରୁ ମହାଜନପୁଅକୁ ଅ[illegible]
ଆପଣା ନଅର ଭିତରେ ଖୁବ୍ ଚର୍ଚ୍ଚା କରି ରଖେଇଲା । ମହାଜନ-
ପୁଅ ଖାଇ ପିଇ ଶୋଇଲା । ରଜାଝିଅ କାକଚରିତ୍ରରେ ସବୁ ଜାଣି
ପାରେ ମହାଜନବୋହୂ, ଛଅଟା ଗାଲି ଏତେ ଫିକର କରୁଛି, ଏ

କଥା ରଜାଝିଅ ସବୁ ଜାଣି ପାରିଲା । ସେ ତାଳରୁ ଅମୃତପାଣିତକ ଅଜାଡ଼ି ରଖିଲା । ତାଳରେ ଅଳ୍ପ ତାଳେ ପାଣି ଭର୍ତ୍ତି କରି ଥୋଇ ଦେଲା । ଏଣେ ଏ ବାଘଛୁଆଙ୍କୁ ଚଢ଼େଇଛୁଆଙ୍କୁ ଶିଖେଇଲା, କହିଲା, 'ଅଜ ରାତରେ ଯେତେବେଳେ ସ୍ୱା ଭାରିଯା ସ୍ୱାଙ୍କୁ ହାଣି ଫିଙ୍ଗିଦେବ, ସେତକବେଳେ ତୁମେ ଦୁହେଁ ଜଣେ ସ୍ୱା ମୁଣ୍ଡ, ଜଣେ ସ୍ୱା ଗଣ୍ଡି ଖାଇବା ବାହାନାରେ ଅଖୁଣ କରି ମୋ ପାଖକୁ ଅଣିଲେ ମୁଁ ସ୍ୱାଙ୍କୁ ବଞ୍ଚେଇ ଦେବି ।' ମହାଜନପୁଅ ଏ କଥା ଜାଣି ନ ଥାଏ । ନିଦରୁ ଉଠି ମହାଜନପୁଅ ଆପଣା ମନକୁ ଜାଣିବାକୁ ଅମୃତପାଣି ତାଳକ ଧିନି ଯାଇ ଘରେ ପହଞ୍ଚିଲା । ପହଞ୍ଚି ପାଣି ତାଳକ ଭାରିଯାକୁ ଦେଲା । ମହାଜନପୁଅ ଏ ଅମୃତପାଣି ଅଣିବାକୁ ଗଲାରୁ ଅସୁର ମହାଜନ-ବୋହୂ ଅଗରୁ ବାଟବାଟ କରି ହୋଇଥାନ୍ତି, 'ଯେବେ ମହାଜନପୁଅ ଏଥରକ ନ ମରି ଫେରି ଅସିବ, ତେବେ ଫେରି ଅସିଲା ଦିନ ରାତରେ ତାକୁ ହାଣି ପକେଇବା । ନଇଲେ ଏ କେଭେଁ ମରିବ ନାହିଁ ।' ସତକୁ ସତ ମହାଜନପୁଅ ଅସି ପହଞ୍ଚିଲା । କେତେ ଦିନ ହେଲା ଜମା ଅଖିପଲକ ପଡ଼ ନାହିଁ । ନିଦରେ ମହାଜନପୁଅ ଘାରି ହେଉଛି । ଭାରିଯା କହିଲା, 'ମୋ ଅଖିରେ ଏ ପାଣି ପକେଇଲାରୁ ଅଖି ଭଲ ହୋଇଗଲା । ବହୁତ ଦିନ ହେଲା ତୁମ ସାଙ୍ଗରେ ପଶା ଖେଳି ନାହିଁ, ଅଜ ଅସ, ପଶା ଖେଳିବା ।' ମହାଜନପୁଅ ମଙ୍ଗିଲା, ମୁହଁ ଭାଙ୍ଗି ପାରିଲା ନାହିଁ । ଅତି କଷ୍ଟରେ ଭାରିଯା ସାଙ୍ଗରେ ପଶା ଖେଳିଲା । ପଶା ଖେଳି ଖେଳି ଅତି ବାଧି ଗଲାରୁ ଯେଉଁଠେଇଁ ବସିଥିଲା, ସେଇଠେଇଁ ଢଳି ପଡ଼ିଲା । ସେତକବେଳେ ମହାଜନ-ବୋହୂ ଖଣ୍ଡା ଅଣି ତାକୁ ଦ'ଗଡ଼ କରି କାଟି ଦେଲା । ହାଣି ସାରି କୋଲପ ଫିଙ୍ଗେଇ ଦେଲା । ଅସୁର ସେ ଘର ଭିତରୁ ବାହାରିଲା, ମୁଣ୍ଡ ଗଣ୍ଡିକୁ କେଉଁଠି ପକେଇବେ ଏ କଥା ବିଗୃରୁଛନ୍ତି, ସେତକ

ବେଳେ ବାଘଛୁଆ ଚଢ଼େଇଛୁଆ କହିଲେ, 'ଏ ମଲ୍ଲ, ଅଚ୍ଛା ହେଲା; ଆମକୁ ବନସ୍ତରୁ ଧରି ଆଣି କେତେ ଦାହାଗଞ୍ଜି କରୁଥିଲା । ଏବେ ଆମକୁ ଛାଡ଼ି ଦିଅ, ଆମେ ଆମ ଘରକୁ ଯାଉଁ । ଆମର ଯାହା ଉପରେ ବଡ଼ ଅଦଇତ ଅଛି, ଯାହା ମୁଣ୍ଡ ଗଣ୍ଡିକ ଆମକୁ ଦିଅ, ଆମେ ବାଟରେ ଖାଇ ମନ ଉଭମାନ ମେଣ୍ଟେଇବୁଁ । ଖାଇସାରି ଯେଉଁଠା ବାଟରେ ଯେଉଁଠା ଘରକୁ ଯିବୁଁ ।' ଅସୁରକୁ, ମହାଜନବୋହୂକୁ ଭଣ୍ଡେଇ ମୁଣ୍ଡ ଗଣ୍ଡିକ ନେଇ ଅଖୁଣ୍ଣ କରି ବାଘଛୁଆ ଚଢ଼େଇଛୁଆ ଦିହେଁଯାକ ଯାଇ ସେ କୋଠିଅ ପାଖରେ ପହଞ୍ଚିଲେ । ରଜାଝିଅ ଯାହାକୁ ଗୃହିଁ ଅନାଦ୍ରା ହୋଇ ବସିଛି । ଏ ଯିମିତ ଯାଇ ପହଞ୍ଚିଲେ, ସିମିତ ଗୋଟିଏ ପଲଙ୍କରେ ଦିବ୍ୟ ସୁନ୍ଦର ଶେଯ ପକେଇ ମୁଣ୍ଡ ଗଣ୍ଡିକ ଯୋଡ଼ି ଶୁଆଇ ଦେଲେ । ଆଗରୁ ଯେଉଁ ଅମୃତପାଣି ଲୁଚେଇ ରଖିଥିଲା, ହର ପାର୍ବତୀଙ୍କ ନାଁ ଧରି ସେ ମଡ଼ା ଉପରେ ଛିଞ୍ଚି ଦେଲାରୁ ମହାଜନପୁଅ ଚେଇଁ ଉଠିଲା । ଆଖି ମଳି କହିଲା, 'ଓହୋ, କେତେ-ଗୁଡ଼ାଏ ଶୋଇ ପଡ଼ିଲି ।' ଯାହା କହି ଆପଣା ଭାରିଯାକୁ ଖୋଜିଲା । ରଜାଝିଅ ତାକୁ ସବୁ କଥା ବୁଝେଇ କହିଦେଲା । ପହିଲେ ମହା-ଜନପୁଅ ସେ କଥା ପ୍ରତେ ଗଲା ନାହିଁ । ରଜାଝିଅ କଥା ବାଢ଼ବାକୁ ସତାକୁ ଯାଇ ଦେଖିଲା ବେଳକୁ ଆପଣା ଭାରିଯା ଅସୁର ସାଙ୍ଗରେ ବସି ଦୁଃଖ ସୁଖ ହେଉଛନ୍ତି । ଖୋଳରୁ ଖଣ୍ଡା ବାହାର କରି ଅସୁରକୁ ହାଣି ମକାଇଲା । ଗୋଟିଏ ଖଣି ଗାଡ଼ ଖୋଳି ଭାରିଯାକୁ ଚଳକଣ୍ଟା ୫, ପରକଣ୍ଟା କରି ପୋତି ପକେଇଲା । ଫେରିଆସି ରଜାଝିଅକୁ ବାହା ହେଲା । ଦିହେଁଯାକ ଆନନ୍ଦରେ ଘର ଦୁଆର କଲେ । ମୁଁ ଗଲିରୁ କଥା ଚଢ଼ିଲେ ନାହିଁ ।

---

# ଅମୂଲ୍ୟମଣି ବା ଗୁରୁ ସଙ୍ଗାତ ।

ଏକ ସହରରେ ଜଣେ ମହାଜନ ଥାଏ । ମହାଜନର ଦି’ ପୁଅ । ମହାଜନ ଦିନେ ଦି’ ପୁଅଙ୍କୁ ଡାକି କହିଲା, ‘ଅରେ ପିଲାଏ, ବସି ଖାଇଲେ ନଈବାଲି ସରେ, ତୁମେ କିଛି କିଛି ଉପାୟ କର । ମୁଁ ତୁମକୁ ଶଏ ଲେଖାଏଁ ଟଙ୍କା ଦଉଛି, ତୁମେ ସେ ଟଙ୍କାରେ ବେପାର କର । ବିଦେଶକୁ ଯାଅ, କିଏ କଣ ରୋଜଗାର କରି ଆଣିବ, ଦେଖିବା ।’ ଏହା କହି ଦି’ ପୁଅଙ୍କୁ ଶହେ ଲେଖାଏଁ ଟଙ୍କା ଦେଲା । ବଡ଼ପୁଅ ଶହେ ଟଙ୍କା ନେଇ ଯାଉଁ ଯାଉଁ ବାଟରେ ଦେଖିଲା, ଏକ କେଳା ଗୋଟିଏ ଶୁଆ ନେଇ ବିକିବାକୁ ଯାଉଛି । ମହାଜନପୁଅ ପଚାରିଲା, ‘କେତେ ଟଙ୍କା ହେଲେ ଏ ଶୁଆ ବିକିବୁ ?’ କେଳା କହିଲା, ‘କୋଡ଼ିଏ ଟଙ୍କା ।’ ମହାଜନପୁଅ କୋଡ଼ିଏ ଟଙ୍କା ଦେଇ ଶୁଆକୁ ରଖିଲା । ଯାଉଁ ଯାଉଁ ବାଟରେ ଦେଖିଲା, ଜଣେ ଗୋଟିଏ ନେଉଳ ନେଉଛି ବିକିବାକୁ । ସେ କହିଲା, ‘କୋଡ଼ିଏ ଟଙ୍କା ହେଲେ ନେଉଳଟିକି ଦେବି ।’ ମହାଜନପୁଅ କୋଡ଼ିଏ ଟଙ୍କା ଦେଇ ତାକୁ କିଣିଲା । ଖଣ୍ଡେ ଦୂର ଯାଇଛି, ଦେଖିଲା, ଜଣେ ଗୋଟିଏ ଓଧ ନେଉଛି । ମହାଜନପୁଅ କୋଡ଼ିଏ ଟଙ୍କାରେ ସେ ଓଧଟିକି କିଣିଲା । ଫେରି ଖଣ୍ଡେ ଦୂର ଯାଇ ଦେଖିଲା, ଜଣେ ଗୋଟିଏ ସାପ ପେଡ଼ିରେ ପୂରେଇ ନେଉଛି । ମହାଜନପୁଅ କୋଡ଼ିଏ ଟଙ୍କା ଦେଇ ସାପଟିକି କିଣିଲା । ଇମିତି ଚାରିକୋଡ଼ି ଟଙ୍କା ସରିଗଲା । ବାକି କୋଡ଼ିଏ ଟଙ୍କା ଖରଚ ସରିଲାରୁ ସାଙ୍ଗରେ ଶୁଆକୁ, ନେଉଳକୁ, ଓଧକୁ, ସାପକୁ ନେଇ ଘରକୁ ଫେରି ଆସିଲା । ଏଣେ ସାନ ଭାଇ ଶହେ ଟଙ୍କା ନେଇ

ଯାଇଥିଲ ବିଦେଶକୁ । ସେ ଫେରି ଅସିଲା ବେଳକୁ ଖାଇ ପିଇ ଗୃହ ଶହ ଟଙ୍କା ଅଣିଛୁ । ମହାଜନ ସ୍ତ୍ରୀ ଦେଖି ସାନ ପୁଅକୁ ଘରେ ରଖି ସବୁ ସମର୍ପି ଦେଲା । ବଡ଼ ପୁଅକୁ ଟାଙ୍କେ ଛେଡ଼ି ଘରୁ ତଡ଼ି ଦେଲା । ବଡ଼ପୁଅ ଏ ଗୃହ ଜନ୍ତୁଙ୍କୁ ସାଙ୍ଗରେ ନେଇ ଗୋଟିଏ ଗଛମୂଳେ ବସିଲା । ଏ ଗୃହଙ୍କି କହିଲା,'ଯେଉଁ ଦେଶକୁ ଯେ ଯାଅ, ମୁଁ ତୁମକୁ କାହୁଁ ପୋଷିବି ?' ଶୁଆ, ନେଉଳ, ଓଧ, ସାପ କହିଲେ, 'ତୁ ଆମର ସଙ୍ଗାତ ହେଲୁ । ବିପତ୍ତି ପଡ଼ିଲେ ଆମକୁ ସୁମରିବୁ ।' ସ୍ତ୍ରୀ କହି ଶୁଆ, ନେଉଳ, ଓଧ ବନସ୍ତକୁ ଗଲେ । ସାପ କହିଲା, 'ସଙ୍ଗାତ ! ଗୁଲ ଅମ ରାଇଜକୁ ଯିବା, ମୋ ମା ବାପ ଅଛନ୍ତି, ତୁମେ ତାଙ୍କୁ ଯାହା ମାଗିବ, ସେ ତାହା ଦେବେ ।' ମହାଜନପୁଅ ମଙ୍ଗିଲା, ସାପ ସଙ୍ଗେ ସଙ୍ଗେ ଗଲା । ଯାଇ କରି ନାଗରଜା ଦେଶରେ ପହଞ୍ଚିଲା । ସାପର ମା ବାପ ସାପକୁ ଦେଖିଲାକ୍ଷଣି ଅନନ୍ଦରେ ତାଙ୍କୁ ବାଟ ଦିଶିଲା ନାହିଁ । ସାପ କହିଲା,'ମତେ କାହୁଁ ତୁମେ ପାଇଥାନ୍ତ ! ଏ ସଙ୍ଗାତ କୋଡ଼ିଏ ଟଙ୍କା ଦେଇ ମତେ ମୁକୁଳେଇ-ଛନ୍ତି । ସ୍ତ୍ରୀଙ୍କ କଥା ଅଗ କରି ବୁଝି ସାର, ମୋ କଥା ପଛେ ବୁଝିବ ।' ବାପା ମା ମହାଜନପୁଅକୁ ବହୁତ ଅଦର କଲେ, କେତେ ଅପୂରୁବ ଦରବମାନ ଅଣି ଖାଇବାକୁ ଦେଲେ, ରତ୍ନପଲଙ୍କ ଦେଲେ ଶୋଇବାକୁ । ବିଦା ହେଲା ବେଳକୁ ସାପର ବାପ ମା ମହାଜନପୁଅକୁ ଗୋଟିଏ ମଣି ଅଣି ଦେଲେ । କହିଲେ,'ଏ ମଣି ଯା ହାତରେ ଥିବ, ତାର । ସ୍ତ୍ରୀକୁ ଯାହା କହିବ, ଏ ତାହା କରିବ; ସ୍ତ୍ରୀ ନାଁ ଅମୃତମଣି ।' ମହାଜନପୁଅ ମଣିଟିକି ଘେନି ଅସିଲା । ଅସୁ ଅସୁ ବାଟରେ ଏକ ରଜା ରାଇଜରେ ପହଞ୍ଚିଲା । ମଣିକି ପଚାରିଲା,'ହଇରେ ମଣି,ତୁ କାହାର ?' ମଣି କହିଲା, 'ମୁଁ ଯାହା ହାତରେ ଅଛି, ତାର ।' ମହାଜନ-ପୁଅ କହିଲା,'ତୁ କଣ କରିବୁ ?' ମଣି କହିଲା, 'ଯାହା କହିବ, ତାହା

କରିବ ।' ମହାଜନପୁଅ କହିଲା, 'ରାତିକ ଭିତରେ ଏ ରଜା ନଅର ଆଗରେ ହୀରା ନୀଳା ମୋତି ମାଣିକ୍ୟରେ ଏକ ନଅର ହେବ, ଏ ରଜା ପୋଖରୀ ଆଗରେ ଝଙ୍ଗମଲମଲ ପଥରର ଏକ ପୋଖରୀ ହେବ; ଏ ରଜା ବଗିଚା ଆଗରେ ରୁପା ଗଛରେ ସୁନା ଫୁଲର ବଗିଚା ହେବ ।' ସତକୁ ସତ ସକାଳୁ ଦେଖିଲା ବେଳକୁ ଉତ୍ତମ ସୁନ୍ଦର ନଅର, ପୋଖରୀ, ବଗିଚା ହୋଇଛି । ରାଜଜାକ ସମସ୍ତେ ଆଚମ୍ଭିତ ହେଲେ ! ମହାଜନପୁଅ ସେ ନଅରରେ ଥାଏ । ରଜା ଯେତେବେଳେ ବଗିଚାକୁ ଆସନ୍ତି, ମହାଜନପୁଅ ସେତିକିବେଳେ ବଗିଚାକୁ ଆସେ । ରଜା ପାରିଧି ବାଜେ କଲାବେଳେ ମହାଜନପୁଅ ବାହାରେ ପାରିଧିକି । ରଜା କୋଠା ଉପରକୁ ପବନ ଖାଇବାକୁ ଆସନ୍ତି, ମହାଜନପୁଅ ଆସେ କୋଠା ଉପରକୁ । ଇମିତି ଦିନା କେତେ ଗଲା । ଦିନେ ରଜା ଗଲେ ମହାଜନପୁଅ ଘରକୁ । ମହାଜନପୁଅ ସାଙ୍ଗରେ ବହୁତ ଦୁଃଖ ସୁଖ ହେଲେ, କହିଲେ, 'ମୋର ତ ପୁଅ ନାହିଁ, ଗୋଟିଏ ଝିଅ; ସେ ଝିଅଟିକି ତୁମକୁ ବାହା କରି ଦେବି, ମୋ ମୁଲକ ତୁମକୁ ଦେବି; ହେଲେ କଣ ହେବ, ତୁମେ ଏତେ ଧନ ଦଉଲତ କମିତି ପାଇଲ, ମତେ କହ ।' ମହାଜନପୁଅ ତ ଏତେ ଛନ୍ଦ କପଟ ଜାଣେ ନାହିଁ; ସବୁ କଥାଯାକ ରଜାଙ୍କୁ କହିଦେଲା । କମିତି ଫନ୍ଦ ଫିକରରେ ମହାଜନପୁଅଠଉଁ ସେ ମଣିଟିକି ରଜା ହାତ କରିବେ, ଏହି ଭାବନାରେ ଥାଆନ୍ତି । ଝିଅକୁ ଆସି କହିଲେ, 'ତୁ ଯା ମହାଜନପୁଅ ପାଖକୁ, ସେ ତତେ ବାହା ହେବାକୁ କହିବ । ତୁ କହିବୁ, ମୋର ବାରମାସ ବ୍ରତ ସମ୍ପୂର୍ଣ୍ଣ ନ ହେଲେ ମୁଁ ବାହା ହେବି ନାହିଁ । ଯା କହି ଯିମିତି ହଉ, କଳରେ ବଳରେ ତାଠଉଁ ସେ ମଣିଟିକି ଆଣି ମତେ ଦବୁ ।' ରଜାଝିଅ ସିମିତି କଲା । ମହାଜନପୁଅକୁ କହିଲା, 'ତୁମର ଯେବେ ମୋଠେଇଁ ସେନେହ ଅଛି, ତେବେ ସେ ମଣିଟିକି କେଉଁଠେଇଁ

ଦେଖିଛ, ମୋତେ କହ ।' ମହାଜନପୁଅ କହିଲା, 'ମୁଁ ଶୋଇବାବେଳେ ମାଣ୍ଡିତଳେ ରଖି ଶୁଏଁ ।' ତହିଁ ଆରଦିନ ରଜା ଗୁଣ୍ଡିଏ ମିଠେଇ ତିଆରି କରି ତା ଭିତରେ ଧୁତୁରା ମଞ୍ଜି ଦେଇ ଝିଅ ଜିମା ଦେଲେ, କହିଲେ, 'ମହାଜନପୁଅକୁ ଯାକୁ ଖାଇବାକୁ ଦବୁ । ମହାଜନପୁଅ ଅଚେତା ହୋଇ ଶୋଇ ପଡ଼ିବ । ତୁ ସେତିକି ବେଳେ ମାଣ୍ଡିତଳୁ ମଣିଟିକି କାଢ଼ି ଆଣିବୁ, ମତେ ଦବୁ । ଯା ନ କଲେ ତତେ ଦ'ଗଡ଼ କରି ହାଣି ପକେଇବି ।' ରଜାଝିଅ ସିମିତି କଲା । ମଣିକି ଆଣି ବାପ ଜିମା ଦେଲା । ରଜା ସେ ମଣିକି ପଚାରିଲେ, 'କି ରେ ମଣି, ତୁ କାହାର ?' ମଣି କହିଲା, 'ମୁଁ ଯାହା ହାତରେ ଅଛି, ତାର ।' ରଜା ସେ ମଣିକି ହୁକୁମ ଦେଲେ, କାଲି ସକାଳୁ ଉଠିଲାବେଳକୁ ଏ ମହାଜନପୁଅ ଖଣ୍ଡେ ଚିରା କନା ପିନ୍ଧି ଦରିଆ ମଝିରେ ଏକ ଟାପୁରେ ଅମୁହାଁ ଦେଉଳ ଭିତରେ ଶୋଇଥିବ । ମହାଜନପୁଅ ସତକୁ ସତ ସକାଳୁ ଉଠି ଦେଖେ, ଏକ ଅମୁହାଁ ଦେଉଳରେ ପଡ଼ିଛି, ସବୁଆଡ଼ ଅନ୍ଧାର । ମଣିକି ଦାଣ୍ଡିଲା, ପାଇଲା ନାହିଁ । କେତେ କାନ୍ଦିଲା । ପଛକୁ ତା ଗୁରୁ ସାଙ୍ଗାତଙ୍କ କଥା ମନେ ପଡ଼ିଲା । ବିଚାରିଲା, କେଜାଣି ଅବା ଗୁରୁ ସାଙ୍ଗାତଙ୍କୁ ସୁମରିଲେ ସେ ଆସିବେ । ଯା ବିଚାରି ଗୁରୁ ସାଙ୍ଗାତଙ୍କୁ ସୁମରଣା କଲା । ଔଧ ପାଣିରେ ପଶିଲା, ତା ଉପରେ ସାପ ଗୁଡ଼େଇ ହେଲା, ସାପ ଫେଣା ଟେକିଲା, ଫେଣା ଉପରେ ନେଉଳ ବସିଲା । ଇମିତି ସେ ତିନିହେଁ ସାତ ସମୁଦ୍ର ପାରି ହେଲେ, ଶୁଆ ଉଡ଼ି ଉଡ଼ି ଆସିଲା । ସମସ୍ତେ ଆସି ସେ ଅମୁହାଁ ଦେଉଳ ପାଖରେ ପହଞ୍ଚିଲେ । ଦେଖିଲା ବେଳକୁ ସେ ଦେଉଳର ଦୁଆର ନାହିଁ । ନେଉଳ ସେ ଦେଉଳତଳୁ ମାଟି ଖୋଳିଲା । ଖୋଳି ଖୋଳି ଦେଉଳତଳେ ଏକ ଗାତ କଲା । ଗୁରୁ ସାଙ୍ଗାତ ଯାଇ ଦେଉଳ ଭିତରେ ମହାଜନପୁଅ

ପାଖରେ ପହଞ୍ଚିଲେ । ମହାଜନପୁଅ ସୁଆଙ୍କୁ ଦେଖି କେତେ କାନ୍ଦିଲା । ମହାଜନପୁଅକୁ ପଦାକୁ ଆଣିଲେ । ଶୁଆ ଉଡ଼ି ଉଡ଼ି ଯାଇ ଭଲ ଭଲ ବଣଫଳ ଆଣି ଦେଲା । ମହାଜନପୁଅ ଫଳ ସବୁ ଖାଇ ସାରି ସଙ୍ଗାତଙ୍କୁ ସେ ରଜା କଥାଯାକ ସବୁ କହିଲା । ଗୃହ ସଙ୍ଗାତଯାକ ମହାଜନପୁଅ ପାଖରେ ଅଠ ଦିନକୁ ଖାଇବା ଭଳି ଦରବମାନ ଆଣି ଦେଇ କହିଲେ, 'ତୁମେ ଏଠେଇ ଥାଅ, ଆମେ ଯାଉଚୁଁ ସେ ମଣିକି ଆଣିବୁଁ ।' ସୁଆ କହି ଗୃହ ସଙ୍ଗାତଯାକ ଯାଇ ରଜାନଅରରେ ପହଞ୍ଚିଲେ । ରଜା କୋଠା ଉପରକୁ ପବନ ଖାଇବାକୁ ଆସିଛନ୍ତି, ଶୁଆ ଉଡ଼ିଯାଇ ରଜାଙ୍କ ପାଖରେ ବସିଲା । ବୋଇଲା, 'ରାଧା କୃଷ୍ଣ, ରାଧା କୃଷ୍ଣ, କୃଷ୍ଣ କୃଷ୍ଣ, ରାମ ରାମ ।' 'ଚନ୍ଦଧର ! ପକ୍ଷିଜନ୍ମରୁ ଉଦ୍ଧାର କର ।' ଇମିତି କେତେ ବୋଇଲା, ଗୀତଗୋବିନ୍ଦଯାକ ବୋଲିଗଲା । ରଜା ଶୁଣି ଭାରି ଖୁସି ହେଲେ । ରଜା ହାତରେ ଗୋଟିଏ କଇଁଚକାକୁଣ୍ଡ଼ ଧରି ଶୁଆଟିକି ଡାକିଲେ । ଶୁଆ କହିଲା, 'ତୁମେ ମତେ ପଞ୍ଜୁରିରେ ରଖିବ ନାହିଁ, ଏ କଥା ସତ୍ୟ କର, ମୁଁ ତୁମ ପାଖକୁ ଯିବି । ଦିନରାତି ତୁମ ପାଖରେ ଥିବି ।' ରଜା ସତ୍ୟ କଲାରୁ ଶୁଆ ଆସି ରଜାଙ୍କ ହାତରେ ବସିଲା । ରଜା ଯାହା କହନ୍ତି, ଶୁଆ ତାହା ବୋଲେ । ଏଣେ ସେ ମଣିକି ଲକ୍ଷ୍ୟ ଥାଏ । ଦେଖିଲା ଯେ, ରଜା ରାତିରେ ଶୋଇଲା ବେଳେ ସେ ମଣିଟିକି ଜିଭ ତଳେ ଯାକି ଶୋଇଲେ । ଶୁଆ ତିନି ସଙ୍ଗାତଙ୍କୁ ଏ କଥା କହିଲା । ରଜା ଶୋଇ ପଡ଼ି ଘୁଙ୍ଗୁଡ଼ି ମାରିଲେ । ସାପ ଯାଇ ରଜାଙ୍କ ନାକ ଭିତରେ ଲାଙ୍ଗୁଡ଼ଟିକି ପୂରେଇ ଦେଲା । ରଜା ଛିଙ୍କି ଉଠିଲା ବେଳକୁ ପାଟିରୁ ମଣିଟି ଖସି ପଡ଼ିଲା । ଯିମିତି ମଣି ଖସି ପଡ଼ିଲା, ନେଉଳ ତାକୁ ପାଟିରେ ପୂରେଇ ରଖିଲା । ମଣିକି ନେଇ ଗୃହ ସଙ୍ଗାତଯାକ ମହାଜନପୁଅ ପାଖକୁ ବାହାରିଲେ । ଓଧ ଉପରେ ସାପ, ସାପ-

ଫେଣା ଉପରେ ନେଉଳ ବସିଲା, ଶୁଅଟି ଉଡ଼ିଗଲା । ନେଉଳ ପାଟିରେ ମଣିଟି ଥାଏ । ଦରିଆ ପାରି ହଉଛନ୍ତି, ନେଉଳକୁ ହାଇ ଆସିଲା । ହାଇ ମାରିଲା ବେଳକୁ ମଣିଟି ପାଣିରେ ଖସି ପଡ଼ିଲା । ନେଉଳ ବୁଦ୍ଧି ହଜିଲା । ଏତେ ଦୁଃଖରେ ମଣି ମିଳିଥିଲା, କୁଆଡ଼େ ଗଲା ! ଓଧ ଏ କଥା ଶୁଣିଲା । ଓଧ ମାଛଙ୍କର ରଜା । ମାଛଯାକ ଓଧକୁ ଡରନ୍ତି । ଓଧ ଯାଇ ଦରିଆଯାକ ଘାଣ୍ଟି ପକେଇଲା । ମାଛ-ଯାକ ଡରରେ ଥରହର ହେଲେ । ଓଧ ଯାଇ ରାଘବ ମାଛକୁ ଧରିଲା, ରାଘବ ସବୁ ମାଛକୁ ଆଣି ଜୁଣ୍ଡ କଲା । କହିଲା, 'ଯେ ମଣିଟିକି ନେଇଛ, ଆଣିଦିଅ, ନଇଲେ ଓଧ ଆଜି ଆମ ବଂଶ ନିର୍ମୂଳ କରିବ ।' ଗୋଟିଏ ମାଛ ସେ ମଣିଟିକି ଗିଳିଥିଲା । ଯା' ଶୁଣି ସେ ତା ପେଟ ଭିତରୁ ମଣିଟିକି ବାନ୍ତି କରି ପକେଇଲା । ତିନି ସଙ୍ଗାତ ମଣିଟିକି ପାଇ ଆନନ୍ଦରେ ମହାଜନପୁଅ ପାଖରେ ଆସି ପହଞ୍ଚିଲେ । ମହାଜନ-ପୁଅ ମଣିଟିକି ପାଇବାରୁ ତାକୁ ଆନନ୍ଦରେ ବାଟ ଦିଶିଲା ନାହିଁ । ମଣିକି ହୁକୁମ ଦେଲା, ସେହିକ୍ଷଣି ଏକ ମନପବନ ଡଙ୍ଗା ଆଇଲା । ମହାଜନପୁଅ ଗୃହ ସଙ୍ଗାତଙ୍କୁ ଘେନି ସାତ ସମୁଦ୍ର ପାରି ହେଲା, ଆସି ସେ ରଜା ମୁଲକରେ ପହଞ୍ଚିଲା । ମଣିକି ହୁକୁମ ଦେଲା, 'ଏ ରଜାକୁ ଶଢ଼ିକନା ପିନ୍ଧେଇ ସାତ ସମୁଦ୍ର ଭିତର ଟାପୁରେ ସେ ଅମୁହାଁ ଦେଉଳରେ ରଖିଆ ।' ରଜା ଗଲାରୁ ରଜାଝିଅକୁ ଡାକି ସବୁ କଥା ପଗ୍ଭରିଲା । ରଜାଝିଅ ସବୁ କଥା ମାନିଗଲା । କହିଲା, 'ବାପା ମତେ ହାଣିପକାଇବାକୁ ବସିଲାରୁ ମତେ ଯାହା କହିଲେ, ମୁଁ ତାହା କଲି । ତୁମେ ଗଲାରୁ ମତେ କେତେ ଜଗର କଲେ ବାହା ହବାକୁ, ମୁଁ ବାହା ହେଲି ନାହିଁ । ମୁଁ ତ ଏତେ କଥା ଜାଣି ନ ଥିଲି ! ମୁଁ ତୁମକୁ ଖୋଜି ଥାଏଁ । ମତେ କହିଥିଲେ, ଯେବେ ତୁ ମାସକ ଭିତରେ ବାହା ନ ହବୁ, ତେବେ ଦ'ଗଡ଼ କରି ହାଣି ପକେଇବି । ଦରବ-

ଯୋଗରୁ ମାସେ ନ ପୂରୁଣୁ ତୁମେ ଅସି ପଡ଼ିଗଲ ।' ମହାଜନପୁଅ ଏ କଥାର ପ୍ରମାଣ ନେଲା । ପରକୁ ବୁଝିଲା ଯେ ଏ କଥା ସତ । ମହାଜନପୁଅ ବିଚାରିଲା, ଯାହା ତ ହବାର ହେଲଣି, ରଜାଙ୍କୁ ଏ ମୂଲକକୁ ନ ଅଣିଲେ ହେଲା । ସ୍ତ୍ରୀ ବିଚାରି, ମଣିକି ହୁକୁମ ଦେଇ ସାତ ସମୁଦ୍ର ଟାପୁ ଭିତରେ ଦିବ୍ୟ ସୁନ୍ଦର ନଅର ତୋଳେଇ ବଗିଚା କରିଦେଲା । ସେଇଠି ରଜା ରହିଲେ । ମହାଜନପୁଅ ରଜାଝିଅକୁ ବାହା ହେଲା । ବାପ ଭାଇଙ୍କି ଅଣି ପାତ୍ର ମନ୍ତ୍ରୀ କରି ଅପଣା ପାଖରେ ରଖିଲା । ରଜାଝିଅ ମହାଜନପୁଅ ରାଇଜ ଭୋଗ କରି ଅନନ୍ଦରେ ରହିଲେ । ମୁଁ ଗଳ୍ପରୁ କଥା କହିଲେ ନାହିଁ ।

# କାଲବତୀ କନ୍ୟା

ଗୋଟିଏ ରାଇଜରେ ଏକ ବୁଢ଼ୀ ଅସୁରୁଣୀ ଥାଏ । ଅସୁରୁଣୀ ବୁଢ଼ୀ ଦିନରେ ପାଣିଭିତରେ ଥାଏ, ରାତରେ ପାଣିରୁ ବାହାରି ମଣିଷ ଖାଏ । ଏମିତି ଖାଉ ଖାଉ ରାଇଜଯାକ ମଣିଷ ନିପାତ କଲା । ସେ ରାଇଜରେ ରଜାଝିଅ ପିଲା ହୋଇଥାଏ । ଅତି ଉତ୍ତମ ସୁନ୍ଦର କନ୍ୟାଟିଏ । ଅସୁରୁଣୀର ତାକୁ ଖାଇବାକୁ ମନ କଲାନି ନାହିଁ । ତାକୁ ନେଇ ପାଣି ଭିତରେ ଘରେ ରଖିଥାଏ । ଦିନ ଗଲା, ମାସ ଗଲା, ବରଷ ଗଲା, ସେ ମାଇକିନିଅ ଝିଅଟି ବଢ଼ିଗଲା । ରଜାଝିଅର ଝୁମ୍ପା ଲମ୍ବ ବାଳ—ଲମ୍ବରେ ବାର ହାତ । ଦିନେ ରଜାଝିଅ ଅସିଛି ନଈ କୂଳରେ ଗାଧୋଇବାକୁ, ମୁଣ୍ଡ ଧୋଉ ଧୋଉ ମୁଣ୍ଡରୁ ବାଳଟିଏ ଉପୁଡ଼ି ଗଲା । ରଜାଝିଅ ସେ ବାଳଟିକୁ ଗୋଟିଏ ଫରୁଆରେ ପୂରେଇ ଭସେଇ ଦେଲା । ଫରୁଆଟି ଯାଇଁ ଏକ ଦେଶରେ ଲାଗିଲା । ସେ ଦେଶର ରଜାପୁଅ ଯାଇଥିଲା ପାରଧିକୁ, ନଈକୂଳେ ଏ ଫରୁଆଟିକୁ ଦେଖିଲା । ଫରୁଆ ଫିଟେଇ ଦେଖିଲା ବେଳକୁ ବାର ହାତ ଲମ୍ବର ବାଳଟିଏ । ରଜାପୁଅ ଅବୁଝା, ଆଉ ପାରଧିକୁ ଯିବ କଅଣ ? ସେ ଫରୁଆଟିକୁ ନେଇ ନଅରକୁ ଫେରିଲା । ଘରେ ଯାଇଁ କବାଟ କିଳି ଶୋଇଲା । ଖାଇଲା ନାହିଁ, ପିଇଲା ନାହିଁ, ଯେ ଯେତେ ଡାକିଲେ, କବାଟ ଫିଟେଇଲା ନାହିଁ । ରଜାପୁଅ ମନ୍ତ୍ରିପୁଅ ସାଙ୍ଗାତ । ପଛକୁ ମନ୍ତ୍ରିପୁଅ ଅସି କବାଟରେ ମାଇଲା, ରଜାପୁଅ କବାଟ ଫିଟେଇ ନ ଥାଏ । ମନ୍ତ୍ରିପୁଅକୁ କହିଲା, 'ତୁମେ ସତ୍ୟ କର, ମୁଁ ଯାହା କହିବି ଯେବେ ମୋତେ ଆଣି ଦେବ, ତେବେ ମୁଁ କବାଟ ଫିଟେଇବି ।' ମନ୍ତ୍ରିପୁଅ କଣ କରିବ ? ସତ୍ୟ କଲା । ରଜାପୁଅ କବାଟ ଫିଟେଇଲା । କହିଲା, 'ଏ ଯେଉଁ କନ୍ୟାର

କାଳ, ସେ କନ୍ୟାକୁ ଆଣି ଦେଲେ ମୁଁ ବଞ୍ଚି ହେବି, ନଇଲେ ମୁଁ ପାଣି ଛୁଇଁବି ନାହିଁ ।' ମନ୍ତ୍ରିପୁଅ କେତେ ବୁଝାଇଲେ । କହିଲେ,'ସଙ୍ଗାତ, ଏଇ ଛାର କଥା ପାଇଁକି ଏତେ ଭାବିଲେଣି ! ତୁମେ ଖାଅ ପିଅ, ମୁଁ ସେ କନ୍ୟାକୁ ଆଣି ଦେବି ।' ରଜାପୁଅ ଖାଇଲେ, ପିଇଲେ । ମନ୍ତ୍ରୀପୁଅ ଯାଇଁ ରଜାଙ୍କ ଛାମୁରେ ଜଣା କଲେ । କହିଲେ, 'ମଣିମା ! ବାର ଶହ ବଢ଼େଇଙ୍କି ହୁକୁମ ଦିଅ, କାଲି ସକାଳୁ ମନପବନ ଡଙ୍ଗା ତିଆରି କରି ଆଣି ଦିଅନ୍ତୁ ।' ସେଥିରୁ ରଜା ସେଇକ୍ଷଣି ହୁକୁମ ଦେଲେ । ବାର ଶହ ବଢ଼େଇଯାକ ଧରା ହୋଇ ଆସିଲେ । ରଜା କହିଲେ,'ଯେବେ କାଲି ସକାଳୁ ମନପବନ ଡଙ୍ଗା ଆଣି ନ ଦେବ, ତେବେ ବାର ଶହ ବଢ଼େଇଯାକଙ୍କ ସବଂଶେ ମୁଣ୍ଡକାଟ ହେବ ।' ଗୋଟିଏ ବୁଢ଼ା ବଢ଼େଇ ଅତି ବ୍ୟସ୍ତ ହୋଇ ଗୋଟିଏ କଦମ୍ବଗଛମୂଳରେ ଶୋଇଲେ । ରାତିଯାକ ନିଦ ମାଡ଼ିବାକୁ ନାହିଁ । ସେ ଗଛରେ ଫୁଲଶାଗୁଣାଟିଏ ବସା କରିଥାଏ । ରାତିକି ବସାକୁ ଫେରି ଆସିଲା ବେଳକୁ ଛୁଆଙ୍କ କେଁ କଟର ହେଲେ ଖାଇବେ ବୋଲି । ଫୁଲଶାଗୁଣା ପିଲାଙ୍କୁ ବୋଧ କରି କହିଲା, 'ଆଜି ଯାହା ଆଣିଛି ଖାଇ ଶୁଅ, କାଲିକି ବାର ଶହ ବଢ଼େଇ ସବଂଶେ ହାଣ ହେବେ । କାଲି ଯେତେ ଇଚ୍ଛା ମନ ବୋଧ କରି ଖାଇବ । ସତେ କଣ ବଢ଼େଇ ମନପବନ ଡଙ୍ଗା ତିଆରି କରିବେ ଯେ ହାଣରୁ ବର୍ତ୍ତିବେ ?' ଶାଗୁଣାଛୁଆ ଜିଗର କରି ମାକୁ ପଚାରିଲେ, 'କେଉଁ ଗଛରେ ଭଲା ସେ ଡଙ୍ଗା ତିଆରି ହେବ ?' ମା କହିଲା, 'ଆମେ ଯେଉଁ ଗଛରେ ଅଛୁଁ, ସେଇ ଗଛରେ ମନପବନ ଡଙ୍ଗା ତିଆରି ହୁଅନ୍ତା ।' ବୁଢ଼ା ବଢ଼େଇ ଏହା ଶୁଣି ଭାରି ଖୁସି ହେଲା । ଆଉ ବଢ଼େଇଯାକଙ୍କୁ କହିଲା । ସେ ଗଛକୁ ହାଣି ମନପବନ ଡଙ୍ଗା ତିଆରି କରି ରଜାଙ୍କୁ ଭେଟି ଦେଲେ ।

ରଜାପୁଅ ସକାଳୁ ଉଠି ସଙ୍ଗାତ ସାଙ୍ଗରେ ସେ ମନପବନ ଡଙ୍ଗାରେ ଚଢ଼ି ବାହାରିଲେ । ଯାଇଁ ଯାଇଁ ସେ ଡଙ୍ଗା ଅସୁରୁଣୀ କୂଠରେ ଲାଗିଲା । ସନ୍ଧ୍ୟା ବୁଡ଼ ଗଲାଣି । ଅସୁରୁଣୀ ଯାଇଛି ଅଧାର ଖୋଜି । ବାଲବନ୍ତୀ କନ୍ୟା ଗୋଡ଼ ହାତ ଧୋଇବାକୁ ନଈକୂଠକୁ ଆସିଥାଏ । ଏ ଦି'ସଙ୍ଗାତଙ୍କୁ ଦେଖି କହିଲା, 'ଅହା ! କାହିଁକି ଏ ଦେଶକୁ ଆଇଲ, ଏଇଲାଗେ ତ ବୁଢ଼ୀ ଅସୁରୁଣୀ ଆସି ଖାଇଯିବ ! ହଉ, ଆସିଲଣି ତ ଆସ ।' ଯା କହି ମନପବନ ଡଙ୍ଗାକୁ ଲୁଚେଇ ଦେଲା । ଏ ଦି'ସଙ୍ଗାତଙ୍କୁ ପାଣି ଭିତର ନଅରକୁ ନେଲା । ମନ୍ତ୍ରୀପୁଅ ସବୁ କଥା ବାଲବନ୍ତୀ କନ୍ୟାକୁ କହିଲା । ସକାଳ ହେଲା ବେଳକୁ ଅସୁରୁଣୀ ବୁଲି ବୁଲି ଘରକୁ ଆସିବ । ରାତି ନ ପାହୁଣୁ ବାଲବନ୍ତୀ କନ୍ୟା ଏ ଦିହିଙ୍କି ଯୋଡ଼ାଏ ମାଛି କରିଦେଲା । ଏ ଦିହେଁ ଦଓଟି ମାଛି ହୋଇ ଓର୍ବ ଉପରେ ବସିଥାନ୍ତି । ଅସୁରୁଣୀ ଆସି ପହଞ୍ଚିଲା । ତାକୁ ମଣିଷ ବାସନା ଜଣାଗଲା । କହିଲା, 'ହଇ ଲୋ ଝିଅ, ଏଠେଇଁ ମଣିଷମାଙ୍କ ସ କିଆଁ ବାସୁଛି ? ଏଠେଇଁକି କିଏ ମଣିଷ ଆସିଛନ୍ତି କି ?' ବାଲବନ୍ତୀ କନ୍ୟା କହିଲା, 'ଏଠେଇଁ ତ ଆଉ ମଣିଷ କେହି ନାହିଁ, ମୁଁ ଏକା ଅଛି, ମତେ ଖା ।' ଅସୁରୁଣୀ ଜିଭ କାମୁଡ଼ ପକେଇ କହିଲା, 'ମୋ ଆଇଷ ତୁ ନେ । ତତେ ଖାଇବି ! ଏଡ଼େ କଥାଟାଏ କିଆଁ କହିଲୁ ? ମୁଁ ପଛେ ମରେଁ, ତୁ ବସି ଥା ।' ସନ୍ଧ୍ୟା ହେଲାରୁ ଅସୁରୁଣୀ ଅଧାର ଖୋଜି ଯାଏ । ଅସୁରୁଣୀ ଗଲାରୁ ଏ ଦି'ସଙ୍ଗାତଙ୍କୁ ବାଲବନ୍ତୀ କନ୍ୟା ଫେର ମଣିଷ କରିଦିଏ । ରଜାପୁଅକୁ ସେ କନ୍ୟା ବିଭା ହେଲା । ଫେର ଅସୁରୁଣୀ ଆଇଲାବେଳକୁ ଦିହିଙ୍କି ମାଛି କରିଦିଏ । ଅସୁରୁଣୀ ନିତି ମଣିଷମାଙ୍କ ସ ବାସନା ବାରେ, ନିତି ଝିଅକୁ କହେ । ଝିଅ କହେ, 'ଆଉ ତ କେହି ନାହିଁ, ଯେବେ ମନ ହଉଛି, ମତେ ଖା ।' ଅସୁରୁଣୀ ଜିଭ କାମୁଡ଼ି ତୁନି ହୁଏ । ଇମିତି ଦିନ କେତେ ଗଲା । ଦି'ସଙ୍ଗାତ ଦିନବେଳେ ମାଛି ହୋଇ ରହନ୍ତି,

ଘତଙ୍କ ମଣିଷ ହୁଅନ୍ତି । ୟାଙ୍କୁ ପଚ୍ଛକୁ ବିରକ୍ତ ଲାଗିଲା । ମନ୍ତ୍ରିପୁଅ ଏକ ବୁଦ୍ଧି ପାଞ୍ଚିଲା । ବାଲବତୀ କନ୍ୟାକୁ ଶିଖାଇଲା,'ଆଜି ଅସୁରୁଣୀ ଆସିଲେ ତାକୁ କଅଁଳେଇ ସଅଁଳେଇ ତା'ଠଉଁ କଥା ନବୁ, ତା ଜୀବନନାଟିକା କେଉଁଠି ଅଛି ।' ସତକୁ ସତ ସେ ଦିନ ଅସୁରୁଣୀ ଫେରିଲାରୁ ବାଲବତୀ କନ୍ୟା ତା ଗୋଡ଼ ଘଷିଦେଉଥାଏ, କାନ୍ଦୁଥାଏ । ଟୋପାଏ ଲୁହ ଅସୁରୁଣୀ ଗୋଡ଼ରେ ପଡ଼ିଲା । ଅସୁରୁଣୀ ସେହିକ୍ଷଣି ସେ ଲୁହଟୋପାକ ଚାଟି ଦେଲା । ପଚାରିଲା, 'ହଇଲେ ଝିଅ, ମୁଁ ମରିଯାଏଁଟି, ତତେ କି କଥା ଅପୂରୁବ ଯେ ତୁ କାନ୍ଦୁଛୁ ? ହଜି ଯାଇ-ଥିଲେ ଖୋଜେଇ ଦେବି, ଭାଙ୍ଗି ଯାଇଥିଲେ ଗଢ଼େଇ ଦେବି, ସ୍ୱର୍ଗରୁ ଚାନ୍ଦ ତୁ ଖୋଜିଲେ ଆଣି ଦେବି । ତୁ କାହିଁ କାନ୍ଦୁଛୁ ?' ବାଲବତୀ କନ୍ୟା କହିଲା, 'ମା ଲୋ ମା, ବିଚାରୁଥିଲି, ତୁ କଣ ସବୁଦିନେ ବଞ୍ଚିଥିବୁ ? ତୁ ଆସି ବୁଢ଼ୀ ହେଲୁ, ତୁ ମଲେ ମୋ କଥା କିଏ ବୁଝିବ ? ମୁଁ କାହା ମୁହଁ ଚାହିଁ ଘର ଧରି ରହିବି ? ୟା ମନେ ପଡ଼ିଲାରୁ ଆଖିରୁ ଟୋପାଏ ଲୁହ ପଡ଼ିଗଲା ।' ଅସୁରୁଣୀ ୟା ଶୁଣି କରଙ୍କରେଇ ହସି ଉଠିଲା, କହିଲା,'ମୁଁ କଣ ସହଜରେ ମରିବି ? ମୋ ଜୀବନନାଟିକା କିଏ ପାଇବ ଯେ ମୁଁ ମରିବି ? ତୁ ସେଥିପାଇଁ ଭାଳେଣି କରୁଛୁ କାହିଁ ? ଆମ ବଡ ଅଗଣା ମଝିରେ ଗୋଟିଏ ସିନ୍ଦୂକ ପୋତା ହୋଇଛି । ତା ଭିତରେ ଏକ ଦନ୍ତୁସ୍ କୋଢ଼ ଅଛି । ସେ ଦନ୍ତୁସ୍ କୋଢ଼ ଆଣି ଯେବେ କେହି ଅଣ୍ଡିରପୁଅ ମୋ ମୁଣ୍ଡ କୁଣ୍ଡେଇବ, ସେ ରକତରୁ ଟୋପାଏ ଭୁଇଁରେ ନ ପଡ଼ିବ, ତେବେ ଯାଇଁ ମୁଁ ମରିବି । ନଇଲେ ମତେ କିଏ ସହଜରେ ମାରିବ ଯେ ତୁ ଏତେ ଭାଳେଣି କରୁଛୁ !' ଦ'ସଙ୍ଗାତ ମାଛି ହେଇ ବସିଥାନ୍ତି, ସବୁ ଶୁଣୁ-ଥାନ୍ତି । ଫେରି ବାଲବତୀ କନ୍ୟା ସେ ଅସୁରୁଣୀକି ପଚାରିଲା, 'ମା ଲୋ ମା ! ତୁ ମତେ ସେନେହ କରୁ ନାହୁଁ । ସେନେହ କରୁଥିଲେ ମୋ

ସେଇଁ ଧନ ଦରବ ରଖନ୍ତୁ ନାହିଁ ? ଅସୁରୁଣୀ ଯେଉଁଠେଇଁ ଯେତେ ମାଲମତା ଟଙ୍କାଟୋକର ଧନ ଦରବ ପୋତିଥିଲା, ସବୁ ବାଳବନ୍ତୀ କନ୍ୟା ଆଗରେ କହିଲା ।

ସନ୍ଧ୍ୟା ହେଲାରୁ ଅସୁରୁଣୀ ଗଲା ଅଧାର ଖୋଜି । ଦ'ସଙ୍ଗାତ ମଣିଷ ହୋଇ ବଡ଼ ଅଗଣା ଖୋଲ ସିନ୍ଧୁକ ଭିତରୁ ଦନ୍ତୁର କୋଢ଼ ବାହାର କଲେ । ସକାଳକୁ ଅସୁରୁଣୀ ବୁଲି ଗୁଲି ଆସି ଜାତ ଯିମିତ ମଣିଷମାଉଁସ ବାସନା ବାରେ, ସେ ଘନ ସିମିତ କହିଲା । ବାଳବନ୍ତୀ କନ୍ୟା ଯିମିତ କହେ, ସିମିତ କହିଲା, 'ମୁଁ ଏକା ଏଠେଇଁ ମଣିଷ ଅଛି, ମତେ ଖା' । ଅସୁରୁଣୀ ଜିଭ କାମୁଡ଼ି ପକେଇଲା । ଟିକିଏ ଗଲାରୁ ଅସୁରୁଣୀ ଶୋଇ ପଡ଼ିଲା । ରଜାପୁଅ ମନ୍ତ୍ରିପୁଅ ସେ କୋଢ଼କୁ ଆଣି ବୁଢ଼ୀ ଅସୁରୁଣୀ ମୁଣ୍ଡ ଝିମ୍ପି ଦେଲେ । ରକତ ଭୂଇଁରେ ପଡ଼ିଲା ନାହିଁ, ଶେଯ ଉପରେ ପଡ଼ିଲା । ଅସୁରୁଣୀ ଏକ ଭୀମ ରଡ଼ି ଛାଡ଼ି ବାଡ଼େଇ କଗୁଡ଼ି ହୋଇ ଜୀବନ ଛାଡ଼ିଲା । ତା ଗର୍ଜନରେ ଘର ଦୁଆର ଦୋହଲି ଗଲା । ଅସୁରୁଣୀ ମଲାରୁ ଧନ ଦରବ ପୋତା ଯେତା ସବୁ ଖୋଳି ଖାଳି ଦ'ସଙ୍ଗାତଯାକ ମନପବନ ଡଙ୍ଗାରେ ପୂରେଇଲେ, ବାଳବନ୍ତୀ କନ୍ୟାକୁ ନେଇ ଆପଣା ଦେଶକୁ ଗଲେ । ନଅର ଖଣ୍ଡେ ଦୂର ଥାଏ, ମନ୍ତ୍ରିପୁଅ ଆଗରେ ଯାଇ ରଜାଙ୍କ ଛାମୁରେ ଜଣା କଲା । ରଜା ପାତ୍ର ମନ୍ତ୍ରୀ ଯାନ ବାହାନ ପାଲିଙ୍କି ପାଟଛତା ସାଙ୍ଗରେ ଆଣି ପୁଅ ବୋହୂଙ୍କୁ ଘରକୁ ନେଲେ । ରଜାଙ୍କ ନଅରଯାକ କଦଳୀଗଛ, ପାଣିମାଠିଆ, ଫୁଲହାରରେ ପୂରିଗଲା । ସାଇ ମାଇପେ ହୁଳହୁଳି ଦେଲେ; ଶଙ୍ଖ ବାଜିଲା, ବାଇଦ ବଡ଼କାଠ ବାଜିଲା; ସାତ ଅହିଅ ମାଇପେ ସାତଦୀପ ନେଇ ପୁଅ ବୋହୂଙ୍କୁ ବନ୍ଦେଇଲେ । ପୁଅ ବୋହୂଙ୍କୁ ରାଣୀ ଆସି ଘରକୁ ନେଲେ । ପୁଅ ବୋହୂ ଆନନ୍ଦରେ ଘର ଦୁଆର କଲେ । କିଏ କେତେ ଖାଇଲେ, କିଏ କେତେ ନେଲେ ମୁଁ ଗଲାରୁ ମତେ ଟିକିଏ ପୁଛା ଦେଲେ ନାହିଁ ।

---

# କଳାକୁମର କଥା

ଗୋଟିଏ ରାଇଜରେ ଏକ ରଜା ଥାଏ । ସେ ରଜାପୁଅ ବାହାରିଲା ବିଦେଶ । ଘୋଡ଼ାଶାଳରୁ ପକ୍ଷିରାଜ ଘୋଡ଼ାଟାଏ କାଢ଼ିଲା । ପାଗ ପଟୁକା ହାତ ହତିଆର ବାନ୍ଧିଲା । ଟଙ୍କା ଠୋକର ବାଟ ଧରିଲା, ଗଲା । ଯାଉଁ ଯାଉଁ ଏକ ରଜା ରାଇଜ ପଡ଼ିଲା । ସେ ରଜାଝିଅ କଅଁଣ କରୁଛି, ଦାଣ୍ଡରେ ସୁନାକୁଲେଇ ରୁପାକୁଲେଇ ଘେନି ଧୂଳିଘର କରି ଖେଳୁଛି । ରଜାପୁଅ ଦେଖିଲା ଏ ଟୋକି ବାଟରେ ବସିଛି; ବାଟ ଛାଡ଼ିଲେ ସିନା ରଜାପୁଅ ଯିବ ! ରଜାପୁଅ କହିଲା, 'ବାଟ ଛାଡ଼ ।' ଟୋକି କହିଲା, 'ଯେବେ ମନ ହେଉଛି, ଡେଇଁ କି ବାଟ ଲଙ୍ଘି କରି ଯା, ମୁଁ ବାଟ ଛାଡ଼ିବି ନାହିଁ ।' ରଜାପୁଅ କହିଲା, 'ଏମିତି କନ୍ୟାଙ୍କୁ ଭଅ ହୁଅନ୍ତି, ଦରଭୟ ହୋଇ ଛାଡ଼ି ଯାଆନ୍ତି ।' ଏହା ଶୁଣି ରଜାଝିଅ କହିଲା, 'ଏମିତି ବରକୁ ଭଅ ହୁଅନ୍ତି, ବାପଘରେ ଥାଇ ଶୁଅ ରଅନ୍ତି ।' ଏମିତି ଦୁହେଁଯାକ ଜିଦ ମରାମର ହେଲେ ।

ରଜାଝିଅ ଘରକୁ ଗଲା । ଗୋଟିଏ ଘରେ କବାଟ କିଳି ଶୋଇଲା, ଏକ ଜିଦ ଧରିଲା ସେଇ ରଜାପୁଅକୁ ବିଭା ହେବ ବୋଲି । ପଛକୁ ସବୁ ସଜ ହେଲା, ସେଇ ରଜାପୁଅ ସଙ୍ଗେ ବାହାଘର ହେଲା । ବାହାଘର ଅଧା ହେଉଛି, ରଜାପୁଅ ଧଡ଼କିନା ବେଦିରୁ ଉଠିଲା ଆପଣା ପକ୍ଷିରାଜ ଘୋଡ଼ାରେ ଚଢ଼ି ଗୁଡ଼ିଗଲା । ଯେ ଶୁଣିଲା, ସେ କାବା ହେଲା । ଏମିତି ଜିଦ ମରାମର ହୋଇଛନ୍ତି ବୋଲି ତ କେହି ଜାଣି ନ ଥାଏ । ବାପ ମା ଭାଇ କେତେରେ

ଥାଆନ୍ତି । ଦିନାକେତେ ଗଲା । ରଜାଝିଅ କହିଲା, 'ଅମୁକ ଦେଶ ରଜା ମୂଲକରେ ମତେ ଅଗନାଅଗ୍ନି ବନସ୍ତରେ ଘର ତୋଳେଇ ଦିଅ, ମୋର ସେଠେଇଁ ବାରବରଷ ତପସ୍ୟା ସରିଲେ ମୁଁ ଶାଶୁଘରକୁ ଯିବି' । ଯିମିତି କହିଲା, ସିମିତି ଏକ ଘର ତୋଳା ହେଲା । ରଜାଝିଅ ଯାଇଁ ସେଠେଇଁ ରହିଲା । ସେହି ଦେଶ ରଜାପୁଅ ତ ଯୁଆଁକୁ ବାଘ ହେଉ ଦରବାଘ ହେଉ କର ବେଦରୁ ଜଟି ଅସିଛୁ । ରଜାପୁଅ ଯାଏ ସେଇ ବନସ୍ତକୁ ପାରଧି କରି । ଦିନେ ଯାଇଛୁ ପାରଧି କରି, ଗୋଟିଏ ମିରିଗ ପଛରେ ଗୋଡ଼କୁ ଗୋଡ଼କ ବାଟ ଭୁଲି ଗଲା, ସାଙ୍ଗରେ ପାଂଚ ମନ୍ତ୍ରୀ ଥିଲେ, ତାଙ୍କୁ ସବୁ ଛାଡ଼ିଲା, କଏ କୁଆଡ଼େ ଗଲ, ରଜାପୁଅ ପଡ଼ିଗଲା ଏକା । ଏତିକି ବେଳକୁ ଅସି ବେଳ ବୁଡ଼ିଲା । ରଜାପୁଅ କେତେ ଲୁଅଁ ବୁଲିଲାଣି । ବୁଲି ବୁଲି ଥକିଲାଣି, ଅଉ କଣ୍ଟୁ ବୁଦ୍ଧି ବାଟ ଦିଶୁ ନାହିଁ, ଯେତିକି ଯେତିକି ଅଗକୁ ଯାଉଛୁ, ସେତିକି ବେଶି ବେଶି ଅନ୍ଧାରୁଅ ବଣ । ଏଣେ ଫେର ରଜାପୁଅର ଅତି ସୁକୁମାର ଜୀବନ, ଦିନଯାକ ଖାଇ ନାହିଁ, ପିଇ ନାହିଁ, ହାତ ଗୋଡ଼ ନାଡ଼ୀ ପରି ହେଇ ଯାଉଛୁ, ହଂସା ଛାଡ଼ିଲାଣି, ଭୋକରେ ଶୋଷରେ ତାଳୁବା ପଡ଼ିଗଲାଣି, ରଜାପୁଅକୁ ହୋଲ ମାରି ଗଲାଣି । ଖଣ୍ଡେ ଦୂର ବାଟରେ ଅଲୁଅ ଦିଶିଲା । ରଜାପୁଅ ସେହି ଅଲୁଅକୁ ଗୁହିଁ ଘୋଡ଼ାକୁ ଚଳେଇଲା, ରଜାଝିଅ ଯେଉଁଠି ଘର ତୋଳିଛୁ, ସେଠେଇଁ ଯାଇଁ ପହଞ୍ଚିଲା । ରଜାଝିଅ ତାକୁ ଦେଖା ଦେଲା ନାହିଁ । ରଜାପୁଅ ଯାଇ ତାକୁ କହିଲା, 'ତୁମେ ଯିଏ ଇଛା ଯିଏ ହୁଅ, ମତେ ମନାଏ ପାଣି ଦିଅ ପିଇବାକୁ, ମୋର ତଣ୍ଟି ଶୁଖି ଯାଉଛୁ', ରଜାଝିଅ ତାପାଇଁ ଉତ୍ତର ସୁନ୍ଦର ସାମଗ୍ରୀ ତିଆରି କଲା ଖାଇବାକୁ, ତାକୁ ମନବୋଧ କରି ଖାଇବାକୁ

ଦେଲା, କହିଲା, 'ଏବେ ରାତି ହେଲାଣି, ଇଲାଗେ କୁଆଡ଼େ ଯିବ,
ଆଜି ରାତିକି ଏଠେଇଁ ରହ, କାଲି ସକାଳୁ ତୁମ ଘରକୁ ଯିବ'।
ରଜାପୁଅ ଏ କଥାକୁ ସନମତ ହେଲା । ରାତିକି ତା ଘରେ ରହିଲା ।
ରଜାଝିଅ ତାକୁ ନେଇ ଘର ଭିତରେ ପଲଙ୍କ ସୁପାତି ଉପରେ
ଶୁଆଇଲା । ରଜାପୁଅ ତ ଭୋଳ, ସେ ତ ଏତେ ଭିତର କଥା ନ
ଜାଣେ । ରଜାଝିଅ ରୂପ ଦେଖି ଭୁଲିଗଲା । ରଜାପୁଅ ପାଖକୁ
ଡାକିଲା, ଦହେଁଯାକ ବସି ବହୁତ ରାତିଯାଏ କେତେ ଦୁଃଖସୁଖ
ହେଲେ । ରଜାପୁଅ ତ ନିର୍ମାୟା, ସବୁ କଥା ରଜାଝିଅକୁ କହି
ପକେଇଲା । ରଜାଝିଅ ଅସଲ କଥା କହିଲା ନାହିଁ, ଏଣୁ ତେଣୁ କରି
ରଜାପୁଅକୁ ଭଣ୍ଡେଇ ଦେଲା । ରାତିରେ ଦହେଁଯାକ ପଲଙ୍କରେ
ଶୋଇଲେ । ରାତି ପାହିଲା । ସକାଳୁ ରଜାପୁଅ ଉଠି ତା ନଅରକୁ
ବିଦା ହେଲା ବେଳେ ରଜାଝିଅ କହିଲା, 'ତୁମେ ତ ରଜା ଭୋଳ,
ଆଜି କଥା କାଲିକି ମନେ ରଖିବ ନାହିଁ । ତୁମେ ତ ମତେ ଏଠେଇଁ
ଛାଡ଼ି ଯାଉଛ, ମୋର ଯେବେ ପିଲାଝିଲା ହବ, ତୁମେ ଭଲା ତାକୁ
ଚିହ୍ନିବ କିମିତି ?' ରଜାପୁଅ କହିଲା, 'ତୁମେ ମୋ ପାଗଡ଼ନାରୁ ଖଣ୍ଡେ
କାଟିକରି ରଖ, ମୋ ରତନମୁଦିକି ରଖ; ଯାକୁ ଦେଖେଇଲେ ମୁଁ
ତୁମକୁ ନିଶ୍ଚେ ଚିହ୍ନିବି' । ରଜାଝିଅ ସେ ପାଟକନାକୁ ଆଉ ସୁନା
ମୁଦିକି ସନ୍ତକ ରଖିଲା । ରଜାପୁଅ ତା ନଅରକୁ ଗଲା । ଦିନାକେତେ
ଗଲାରୁ ଫେର ରଜାପୁଅର ମନେ ପଡ଼ିଲା, ଫେର ପାରିଧି ଗଲା
ବାହାନାରେ ଆସିଲା । ରଜାଝିଅ ପାଖରେ ରାତିଏ ରହିଲା, ସକାଳୁ
ଉଠି ଗଲା ଭୋର । ସେ ଦିନ ରଜାଝିଅ ଫେର ଗୋଟିଏ ସନ୍ତକ
ରଖିଲା, ରଜାପୁଅ ସେ ଦିନ ତା ସୋରଷିଆ ହାରଟି ରଜାଝିଅକୁ
ଦେଇ ଗଲା । ଇମିତି ମଝିରେ ମଝିରେ ରାତିଏ ରାତିଏ ରଜାପୁଅ
ଆସେ, ସକାଳୁ ଯାଏ ଭୋର, ରଜାଝିଅ ତାଠଉଁ ଗୋଟିଏ ଗୋଟିଏ

ଦଳେକ ରଖେ । ରଜାଝିଅ ସେ ବଣରେ ତିନି ଚାରି ମାସ ରହିଲା । ଦିନେ ରଜାପୁଅଙ୍କୁ କିଛି ନ କହି ତୁନି କରି ସେଠୁଁ ଘର ଛାଡ଼ି ଆପଣା ବାଇଜଙ୍କୁ ଗଲା । ରଜାପୁଅ ଅସି ପଛେ ଖୋଜିଲା ବେଳକୁ ଅଉ ଥାଏ କାହିଁ । ଦିନାକେତେ ଖୋଜିଲା, କିଛି ସୋରସାର ପାଇଲା ନାହିଁ । ପଛକୁ ତୁନି ହୋଇ ରହିଲା । ଏଣେ ରଜାଝିଅ ଗଲା ଆପଣା ମୁଲକକୁ, ବାପଘରେ ଯାଇଁ ରହିଲା । ଗଲାବେଳକୁ ରଜାଝିଅର ମାସ ଗଡ଼ୁଥାଏ, ବାପ ମାଙ୍କୁ ସବୁ କଥା ଖବର ଦେଲା । ସାତ ଅଠ ମାସ ଗଲାରୁ ରଜାଝିଅର ଗୋଟିଏ ଉତ୍ତମ ସୁନ୍ଦର ବାଳୁତ ହେଲା । ଦିନକୁ ଦିନ ବାଳୁତଟି କୁଅଁର ପୁନେଇ ଜହ୍ନ ପରି ଶୋଭା ଦିଶିଲା । ଚାଲି ବୁଲି ପାରିଲାରୁ ତା ପାଟି ଫିଟିଲା । ବୁଦ୍ଧି ହେଲାରୁ ତାକୁ ନେଇ ଚାହାଳିରେ ବସେଇଲେ । ତାର ଭାରି ବୁଦ୍ଧି । ତା ନାଁ ଦେଲେ 'କଳାକୁମର' । ଚାହାଳିରେ ଚାରି ଦିନେ ଚାରି ପାଠ ପଢ଼ିଲା । ଦିନେ କଳାକୁମରର ଖଡ଼ି ଗଡ଼ିଗଲା । ରଜାଘର କଥା ବୋଲି ସିନା ବାଇଜଯାକ ତୁନି ହୋଇ ରହୁଛନ୍ତି ! ଚାହାଳି ପିଲାଏ କି ଜାଣନ୍ତି ରଜା ଫଜା । ସାଙ୍ଗ ପିଲାଅଙ୍କୁ କଳାକୁମର କହିଲା ଖଡ଼ି ଗୋଟେଇ ଆଣି ଦବାକୁ । ସାଙ୍ଗ ପିଲାଏ କହିଲେ, 'ତୁଟା ତ ଅଣବାପୁଅ, ତୋ ଖଡ଼ି ଆମେ ଗୋଟେଇ ଆଣି ଦବୁ ନାହିଁ' । କଳାକୁମର ମନେ ମନେ ଭାରି ରାଗ ହେଲା । ମନ କଥା ମନରେ ଥାଏ, ଘରକୁ ଗଲା । ଅଉ ଗାଧୋଇ ପାଧୋଇ ଖାଇବ କିଏ ? ଗୋଟାଏ ଘରେ ମୁଣ୍ଡାମାଡି ଭଣଭଣ, ଭିତରଗୃହ ସଣସଣ, ସେଇ ଘରେ କବାଟ କିଳି ଶୋଇଲା । ଯେ ଡାକିଲା, କବାଟ ଫିଟେଇଲା ନାହିଁ । ଦିନ ଅସି ଦ'ପହରରୁ ଗଡ଼ିଗଲାଣି, ପଛକୁ ତା' ମା ଡାକିବାକୁ ଅଇଲା । ମାକୁ କଳାକୁମର ତା ମନଦୁଃଖ କହିଲା । କହିଲା, 'ମୋ ବାପକୁ ନ ଦେଖିଲେ ଖାଇବ ନାହିଁ ।' ମା କହିଲା, 'ତୁ

ଖା ଫି, ମୁଁ ଦେଖେଇ ଦେବ ।' କଳାକୁମର ମାକୁ ସତ୍ୟ କରେଇଲା । ଖାଇଲା, ପିଇଲା । ଏ ଏକା ଜିଦ ଧରିଥାଏ । ମା ଯେତେ ବୁଝେଇଲା, ବୁଝିବାକୁ ନାହିଁ । ପଛକୁ ମା କଣ କଲା—ଅଗରୁ ରଜାପୁଅଠାରୁଁ ଯାହା ଯାହା ସନ୍ତକ ରଖିଥିଲା, ପୁଅ ସାଙ୍ଗରେ ସେତେକ ଗୋଟି ଏ' ବୁଜୁଲି ବାନ୍ଧି ଦେଲା । ସେ ରଜା ଘରର ଠିକଣା ବତେଇ' ଦେଲା ।

କଳାକୁମର ଘୋଡ଼ାରେ ଚଢ଼ି କରି ମାଲ୍‌ମଭା ହାତରେ ଧିମାଲା, ଗଲା । ଯାଇ ଅପଣା ବାପ ମୁଲ୍‌କରେ ପହଞ୍ଚିଲା । ରଜାଙ୍କ ମାଲ୍‌ୟାଣୀ ଘରେ ବସା କରି ରହିଲା । ନିତ ଯାଇ କଣ କରେ— ରଜାଙ୍କ ଦାଣ୍ଡରେ ପାଗପଠୁକା ବାନ୍ଧି ଘୋଡ଼ା ଦଉଡ଼ାଏ । ଯେ ପଚ୍ଛୁରେ 'ତୁ କିଏ ?' କଳାକୁମର କହେ,'ମୁଁ ମହାଜନ, ଅସିଛି ସୁନା ରୁପା ଅଳଙ୍କାର ବିକି ।' ସମସ୍ତେ କହନ୍ତି, 'କି କି ଅଳଙ୍କାର ଅଣିଛୁ, ଦେଖା ।' କଳାକୁମର କହେ, 'ମୋ ଅଳଙ୍କାର ଅମୂଲ୍ ମୂଲ୍, ଇମିତ କିଏ ନବାବାଲା ଅଛି ଯେ ମୁଁ ଅଳଙ୍କାରଯାକ ଦେଖେଇବି ?' ସମସ୍ତେ ଏହା ଶୁଣି ରଜାଙ୍କୁ ଜଣା କରେଇଲେ । ରଜା ମହାଜନକୁ ଡକେଇଲେ । କଳାକୁମର ଅସି ପହଞ୍ଚିଲା । କହିଲା,'ମଣିମା ! ମୁଣ୍ଡ ରହିଲେ କହିବି । ମଣିମାଙ୍କ ଘଇଜଯାକ ଦେଲେ ତ ମୋ ଅଳଙ୍କାରର ମୁଲ୍ ସରି ହବ ନାହିଁ । ମଣିମା ମୋ ଅଳଙ୍କାର ରଖିବାକୁ ମନେ କରୁଛ କିଅଁ ?' ରଜା ଏହା ଶୁଣି ଭାରି ଜିଦ କଲେ । ପଛକୁ କଳାକୁମର କହିଲା ସେ ଅଳଙ୍କାରଯାକ ରଜାଙ୍କୁ ଏକୁଟିଆ ଦେଖେଇବ, ଅଉ କେହି ଦେଖିବ ନାହିଁ । ରଜାଙ୍କୁ ଏକୁଟିଆ ଡାକି ନେଇ ପାଗ କନା, ସୁନାମୁଦ, ସୋରିଷିଆ ହାର, ଅଉ ଅଉ ଯାହା ସବୁ ମା ଦେଇଥିଲା, ଦେଖେଇଲା । ରଜା କହିଲେ, 'ତୁମେ ଏହାକୁ ସବୁ କାହୁଁ ପାଇଲ ?' କଳାକୁମର କହିଲା, 'ମୋ ମା ମତେ ଦେଇଛି । ମୋ ମାକୁ ଡକେଇଲେ

ସବୁ କଥା କହିବ ।" ରଜା ଯାନ ବାହାନ ପାଲିଙ୍କି ପାଟଛତା ପଠେଇ କଳାକୁମର ମାକୁ ଅଣେଇଲେ, ସବୁ ପୂର୍ବର କଥାଯାକ ଶୁଣିଗଲେ, ରଙ୍ଗାଝିଅର ବୁଦ୍ଧିକୁ ପ୍ରଶଂସା କଲେ, ଆଣି ପାଟରାଣୀ କରି ଘରେ ରଖିଲେ, କଳାକୁମରକୁ ଟୀକା ଦେଲେ, ପୁଅ ମାଇପ ନେଇ ସୁଖରେ ରାଇଜ କଲେ । ମୁଁ ଗଳ୍ପରୁ କଥା କହୁଛି ନାହିଁ ।



# ବୁଢ଼ା ଚୁଙ୍ଗୁଡ଼ି କଥା

ଏକ ଗାଁରେ ବୁଢ଼ା ବୁଢ଼ୀ ଯୋଡ଼ାଏ ଥାଆନ୍ତି । ବୁଢ଼ା ଯାଏ ମୂଲପାଟ ଲାଗି, ବୁଢ଼ୀ ଯାଏ ଧାନ କୁଟି । ଦୁହେଁ ଘର, ଦୁଆର ମୁହଁରେ ତାଟି ଖଣ୍ଡ ଅଙ୍କକେଇ ଧଡ଼ା ଲଗେଇ ଦେଇ ଯାଆନ୍ତି । ଗୋଟିଏ ବସ୍ତୁବାଲିଆ ବୁଢ଼ା ଚୁଙ୍ଗୁଡ଼ିଟିଏ ଥାଏ ଯେ ସେ କଣ କରେ ନା, ବୁଢ଼ା ବୁଢ଼ୀ ତାଟି ଲଗେଇ ଦେଇ ଗଲାକ୍ଷୁ ବାଡ଼ି ଗାଡ଼ିଆରୁ ଉଠି ତାଟି ଟଣ୍ଡିକ ଫିଟେଇ କରି ଘରେ ପଶେ, ହାଣ୍ଡିରୁ ପଖାଳତକ ଲୁଣିଲୁଣି ପେଟେ ଖାଏ, ତୋରାଣି ପେଟେ ପିଏ, ଫେର୍ ଗାଡ଼ିଆକୁ ଯାଏ ବାହାରି । ନିତ ବୁଢ଼ା ବୁଢ଼ୀ ଆସି ଦେଖିଲାବେଳକୁ ତାଟି ମେଲା, ହାଣ୍ଡି କୁଣ୍ଡେଇରେ ଭାତଟିଏ ସୁଦ୍ଧା ନାହିଁ । ବୁଢ଼ା ଦିନେ ବିଚାରିଲା, 'ଆଜି ଏ ଚୋରକୁ ଜଗିବି, ଦେଖେଁ ତ ଦେଖି ଚୋର ଭଲା କିମିତ ଆସିବ ।' ବୁଢ଼ୀ ବାହାରିଲା ତା ଧନ୍ଦାକୁ । ବୁଢ଼ା କହିଲା, 'ବୁଢ଼ୀ, ତୁ ପଦାରୁ ତାଟି ଲଗେଇ ଦେଇ ଯା ।' ବୁଢ଼ା ଭାଢ଼ ଉପରେ ଧଡ଼ାଟାଏ ଧରି ଲୁଚି ବସିଥାଏ । ବୁଢ଼ୀ ଗଲାରୁ ଚୁଙ୍ଗୁଡ଼ି ଦେଖିଲା ତାଟି ଲାଗିଛି, ଯିମିତ ନିତି ଆସି ତାଟି ଫିଟେଇ ପଶେ, ସିମିତ ସେଦିନ ଆସି ପଶିଲା । ଭାତ ହାଣ୍ଡିରେ ମୁହଁ ବୁଡ଼େଇଲାବେଳକୁ ବୁଢ଼ା ଦେଲା ଧଡ଼ାରେ ଠେଙ୍ଗାଏ । ଚୁଙ୍ଗୁଡ଼ି ଏକା ଥରକେ ଛୁଟ୍ପୁଟ ହେଇ ନାରାୟଣ ! ବୁଢ଼ା ସେ ଚୁଙ୍ଗୁଡ଼ିକି କଣ କଲା,—ଗୋଟାଏ ଟୋକେଇ ଘୋଡ଼େଇ ଦେଇ ତା ଉପରେ ଚକି ପଟେ ଥୋଇଦେଲା, ଚୁଙ୍ଗୁଡ଼ିକି ଟୋକେଇ ତଳେ ରଖିଥାଏ, ବୁଢ଼ୀ ଆସି ଘରେ ପହଞ୍ଚିଲାବେଳକୁ ଦେଖେ ଏ ସମାଚାର । ବୁଢ଼ା ବୁଢ଼ୀକି କହିଲା, 'ଏ ଚୁଙ୍ଗୁଡ଼ିଟି

ଅମ୍ବିଳ କରି ରଖ । ମୁଁ ଯାଉଛି ହାଟ ବାଟ କରି ଆସେଁ ।' ସ୍ତ୍ରୀ କହୁ ବୁଢ଼ା ଗଲା ।

ବୁଢ଼ୀ ହଳଦ ବେଶର ଆମ୍ବୁଲ ଦେଇ ସେ ଚୁଙ୍ଗୁଡ଼ିଟିକ ଯତନ କରି ଅମ୍ବିଳ କଲା, ଲୁଣିଅ କି ଅଲଣା ହେଉଛି ଟିକିଏ ଗୁଣ୍ଡିଲା । ଭରି ସୁଆଦ ଲାଗିଲା, ଆଉ ଟିକିଏ ଗୁଣ୍ଡିଲା, ଗୁଣ୍ଡୁ ଗୁଣ୍ଡୁ ସବୁଯାକ ଗୁଣ୍ଡି ଦେଲା, ଦେଖିଲାବେଳକୁ ହାଣ୍ଡିକ ଅମ୍ବିଳ ପୋଛା-ପୋଛି, ହାଣ୍ଡିରେ ବଳକେ ସୁଦ୍ଧା ଲାଗି ନାହିଁ । ବୁଢ଼ୀର ତ ହାଲକ ଶୁଖିଲା । ବୁଢ଼ା ତ ଇଲାଗେ ଆଇଲେ ଆଉ ରଖିବ ନାହିଁ ! ପଛକୁ ଭଣ ଭଲା—ଆପଣା ଜଙ୍ଘରୁ ଖଣ୍ଡେ ମାଉଁସ କାଟି ତାକୁ କେଳେଇ ଧୋଇ ଧାଇ ଅମ୍ବିଳ କଲା । କରିକୁର ରଖି ଦେଲା । ଏ ସବୁ କଥା ଛଇକା ବଗୁଡ଼ ଦେଖିଥାଏ । ଛଜକା ବଗୁଡ଼ ବୁଢ଼ୀ ଖାଇଲାବେଳେ ମିଅଇଁ ମିଅଇଁ ହେଉଥାଏ, ବୁଢ଼ୀ ତାକୁ ସେ ଚୁଙ୍ଗୁଡ଼ି ଅମ୍ବିଳରୁ ଟିକିଏ ନ ଦେଲା । ବଗୁଡ଼ିର ବୁଢ଼ୀ ଉପରେ ରଗ ଥାଏ ।

ବୁଢ଼ା ଆସି ପହଞ୍ଚିଲା, ବୁଢ଼ୀ ତାକୁ ଭାତକଂସାଏ, ଅମ୍ବିଳଟିକ ବାଢ଼ି ଦେଲା । ବୁଢ଼ା ଖାଇ ବସିଥାଏ, ବୁଢ଼ୀର ଏଣେ ଜଙ୍ଘ ଝଙ୍କଟ ସଡ଼ସଡ଼ ହଉଥାଏ । ବୁଢ଼ୀ ଟିକେ ମାଲପା ମାରି ଜଙ୍ଘକୁ ଏଣେ କାଥିଁରେ ଦେଖେଇ କତରି ଖଣ୍ଡେ ଘୋଡ଼ି ହୋଇ ଚୁଲିପଙ୍ଗା ପାଖରେ ପଡ଼ିଥାଏ । ବୁଢ଼ା ପଚାରିଲା, 'କିଲୋ, ଏ କଣ ?' ବୁଢ଼ୀ କହିଲା, 'ମତେ କମ୍ପଜର ଆସୁଛି, ଦାହ ଶିରଶିରେଇ ହଉଛି, ତୁମେ ସେଥିରୁ କଣ ପାଇବ, ତୁମେ ଧନ୍ଦାରେ ଯାଅ, ମୋ ଦାହ ପଛକୁ ଭଲ ହୋଇଯିବ ଯେ ! ମୁଁ ବଳେ ଆପଣା ମନକୁ ଝାଡ଼ି ଝୁଡ଼ି ହୋଇ ବସିବି' । ଏଡିକବେଳେ ଏ ଛଇକା ବଗୁଡ଼ି ଦାଅଣ କରିଥାଏ, ବୋବୋଉଥାଏ, କହୁଥାଏ, 'ବୁଢ଼ୀ ଖାଉଥାଏ ଚୁଙ୍ଗୁଡ଼ି ମାଛ, ବୁଢ଼ା ଖାଉଥାଏ ଜଙ୍ଘ ମାଉଁସ ।' ବୁଢ଼ୀ କହେ, 'ମଲି ! ଏ କାଥିଁ ଲଗା ବଗୁଡ଼ିଟା କଅଁ ଆଜି ଇମିତ ଉତୁରୁଛି ମ ।'

ବୁଢ଼ା ଥରେ ଶୁଣିଲା, ଦ'ଥର ଶୁଣିଲା, ତିନି ଥର ଶୁଣିଲା, ବିରାଡ଼ି କହୁଛି—'ମ୍ୟାଉଁ ମ୍ୟାଉଁ, ମାଛ ଭାତ କରି ଗୁଣ୍ଡାଏ ଦେଲେ ମରମ କଥାଟି କହନ୍ତି।' ବୁଢ଼ା ଭାତ ଅମ୍ବିଳ ଗୋଳେଇ କରି ଗୁଣ୍ଡାଏ ବଳିଲା, 'ଅସ୍ ପୁସ୍'କରି ବିରାଡ଼ିକି ଡାକି ସେ ଗୁଣ୍ଡାକ ଥୋଇ ଦେଲାରୁ ବିରାଡ଼ି ସେ ଗୁଣ୍ଡାକ ଖାଇ ସାରି ବୁଢ଼ାକୁ ସବୁ କଥା କହିଦେଲା। ଯାହା ଶୁଣି ବୁଢ଼ା ମନରେ ଭାରି ରାଗ ହେଲା। ବୁଢ଼ୀକି କହିଲା 'ହଇ ଲୋ! ତୋ'ର ଫେର ଏଡ଼େ ଗାତ! ତୁ ଖାଇବୁ ଋଙ୍ଗୁଡ଼ି ମାଛ, ମୁଁ ଖାଇବି କଙ୍କ ମାଛିଆ?' ଯାହା କହି କଟରି ପୁଞ୍ଜା ନେଇ ବୁଢ଼ାକୁ ଗଡ଼ିଆରେ ମାଡ଼ି ଦେଲା। ବୁଢ଼ୀ ମୁହଁକୁ ମୋଡ଼ିଦେଲା, ଦାନ୍ତକୁ ନିକିଟି ଦେଲା, ଅଣ୍ଟି କାଟେ ତା ପ୍ରାଣ ଗଲା।

ବୁଢ଼ୀକି ସେ ଗଡ଼ିଆରେ ମାଛ ଖୁମ୍ପୁଥାନ୍ତି। ଖୁମ୍ପିଲା ବେଳକୁ ମୁଣ୍ଡ ହଲି ଯାଉଥାଏ। ଦଣ୍ଡେ ଛାଡ଼ିଦେଇ ବୁଢ଼ା ଦେଖିଲା ବେଳକୁ ବୁଢ଼ୀ ପାଣିରେ ମୁଣ୍ଡ ଟୁଙ୍ଗାଉଛି। ବୁଢ଼ା ଯାଇ ଗଡ଼ିଆ କୂଳେ ପହଞ୍ଚିଲା। ବୁଢ଼ୀକି ପଚାରିଲା, 'ହଇଲୋ ବୁଢ଼ୀ, କଅଣ? ତୁ କଅଁ ମୁଣ୍ଡ ଟୁଙ୍ଗାଉଛୁ? ହଳଦୀବାଟୁଆ ନବୁ?' ବୁଢ଼ୀର ମୁଣ୍ଡ ଫେର ଥରେ ଟୁଙ୍ଗାର ହେଇଗଲା। ବୁଢ଼ା ଘରୁ ହଳଦୀବାଟୁଆଟି ନେଇ ବୁଢ଼ୀ ଆଡ଼କୁ ଗଡ଼ିଆରେ ଫିଙ୍ଗି ଦେଲା। ଫେରି ପଚାରିଲା, 'ଆଉ କଣ, କଜଳପାତି ନବୁ?' ଫେର ବୁଢ଼ୀ ମୁଣ୍ଡ ଟୁଙ୍ଗାର ହେଲା। ବୁଢ଼ା ନେଇ କଜଳପାତିଟି ପକେଇ ଦେଲା; ଇମିତି ପକଉ ପକଉ ସିନ୍ଦୁରଫରୁଆ, ଚୁଲା, ବାଉଁଶିଆ, ଛାଞ୍ଚୁଣି, ହେଁସ, ହାଣ୍ଡିକୁଣ୍ଡେଇ ଯାହା ଯିମିତି ଘରେ ଥିଲା, ସବୁ ନେଇ ବୁଢ଼ା ଗଡ଼ିଆରେ ପକେଇ ଦେଲା। ଫେରି ଦେଖିଲା, ବୁଢ଼ୀ ମୁଣ୍ଡ ଟୁଙ୍ଗାଉଛି। 'ଘରେ ଯାହା ଥିଲା ସବୁ ତ ଦେଲି, ଆଉ କଣ ମାଗୁଛୁ? ହଇ ଲୋ ବୁଢ଼ୀ! ମତେ ନବୁ?' ବୁଢ଼ୀର ଫେର ଥରେ ମୁଣ୍ଡ ଟୁଙ୍ଗାର ହୋଇଗଲା। ବୁଢ଼ା ପଛକୁ ଅଧେ ଗଡ଼ିଆକୁ ଡେଇଁ ପଡ଼ି ବୁ,ଡ଼ବେଇ ଟୁବେଇ ହେଇ ମଲା। ମୋ କଥାଟି ସରିଗଲା।

---

# ବେଙ୍ଗୁଲି କଥା ।

ଏକ ଦେଶରେ ଗୋଟିଏ ପଣ୍ଡା ଥାଏ । ସେ ପଣ୍ଡା ଏକ ବାଇଗଣ ବାଡ଼ି କରିଥାଏ । ହାଟପାଳିକି ହାଟପାଳି ବାଇଗଣ ବୋହେ ନେଇ ବିକେ, ପେଟ ପୋଷେ । ଗୋଟିଏ ବାଇଗଣ ଗଛରେ କଳା ମୂର୍‌ମୁର୍ ବାଇଗଣଟିଏ ହୋଇଥାଏ । ସେ ବାଇଗଣଟିକି ତୁଣ୍ଡେଇବାକୁ ପଣ୍ଡାର ହାତ ଗଲାନାହିଁ । ସେ ବାଇଗଣରେ କୁଟାଖଣ୍ଡେ ବାନ୍ଧି ଦେଲା ମଞ୍ଜି ରଖିବ ବୋଲି । ଏଣେ ହେଇଥାଏ କଅଣ, ପଣ୍ଡିଆଣୀର ମାସ ଗଡ଼ୁଥାଏ । ପଣ୍ଡିଆଣୀର ଖାଇ ମନ ହେଲା । ସେ ବାଇଗଣଟି ଉପରେ ଭାରି ଅଖି ଥାଏ । ଏ କଥା ପଣ୍ଡାକୁ କହିବାକୁ ଲାଜ ମାଡ଼ିଲା ।

ଦିନେ ପଣ୍ଡା ଯାଇଛି ହାଟକୁ, ପଣ୍ଡିଆଣୀ କଣ କଲା, ସେ ବାଇଗଣଟିକି ତୋଡ଼ିଦେଲା, ଭରତା କରି ଖାଇଲା । ପଣ୍ଡା ଆସିଲା ହାଟରୁ, ଦେଖିଲା ମଞ୍ଜିବାଇଗଣଟି ନାହିଁ । ବାଛୁ ବାଛୁ ଆଉ ବରଷକୁ ମଞ୍ଜି ବାଇଗଣଟିକି ରଖିଥିଲି, ତାକୁ କିଏ ତୋଡ଼ିଦେଇ ନେଲା ? କେତେ କାନ୍ଦିଲା, ବୋବେଇଲା, ଧରମକୁ ସାକ୍ଷୀ ଦେଲା, କହିଲା, 'ହେ ଧରମ, ତୁ ଥିଲେ ବୁଝିବୁ । ବାଇଗଣଟି ଯେ ତୋଡ଼ିଦେଇଛି, ତାର ଗୋଟିଏ ବେଙ୍ଗପିଲା ହେଉ ।' ଏହା କହି ପଣ୍ଡା ଗଲା ତା ଦୁଃଖରେ । ପଣ୍ଡିଆଣୀର ଗୁହୁଁ ଗୁହୁଁ ଆସି ଦଶ ମାସ ପୂରିଗଲା, ସତକୁ ସତ ପଣ୍ଡିଆଣୀ ଗୋଟିଏ ମାଈ ବେଙ୍ଗଛୁଆ ଜନମ ଦେଲା । ପଣ୍ଡିଆଣୀ କଅଣ କରିବ, ମୁଣ୍ଡ ପୋତି ରହିଲା । 'ଆପଣା ହସ୍ତେ ଜିହ୍ୱା ଛେଦ, କେ ତାର ଅଛି ପ୍ରତିବାଦ ।' ପଣ୍ଡାକୁ ତ ଆଗରୁ ବାଇଗଣକଥା କହି ଦେଇଥିଲେ ଏକାନଟକେ

ଯାଉଥାଆନ୍ତି । ପଣ୍ଡା ସେ ବେଙ୍ଗୁଲିଟିକୁ ଦେଖି, କେତେ ମୁଣ୍ଡ ତୋଡ଼ିଲା । କିଏ ସ୍ତା ଜାଣିଥିଲା ପଣ୍ଡାର ଅପଣା ଗାଲି ଅପଣା ଉପରେ ପଡ଼ିବ ବୋଲି ?

ପଦାକୁ ସିନା ବେଙ୍ଗୁଲି, ହେଲେ କଅଣ ହେବ, ପଣ୍ଡିଅଣୀର ତ ଆପଣା ପେଟର ପିଲା ! ଲକ୍ଷେ ଅସୁନ୍ଦର ହେଲେ ପଣ୍ଡିଅଣୀକୁ ଭାରି ସୁନ୍ଦର ଦିଶୁଥାଏ । ପଣ୍ଡିଅଣୀ ନିତି ବେଙ୍ଗୁଲିକୁ ହଳଦି ଲଗେଇ ଦିଏ, ମାଲିପା ଘଷି ଦିଏ, କେତେ ସୁଆଗ କରେ । ବେଙ୍ଗୁଲିଟି ବଡ଼ ହେଲା । ଦିନେ ସେ ଗାଁ ପାଖରେ ଯାତ ହଉଥାଏ । ବେଙ୍ଗୁଲି ମାକୁ ଲଗେଇଲା ଯାତ ଦେଖି ଯିବ ବୋଲି । ମା କେତେ ବୁଝେଇଲା, 'ତୁ ଏଡ଼େ ବକଟେ, କିଏ ଯାତରେ ତତେ ମାଡ଼ି ପକେଇବ, ପଦାରେ କାଳେ ତତେ କୁଅ ନେଇ ଯିବ, ତୁ ଯାଅ ନା ।' ବେଙ୍ଗୁଲି କି ବୁଝିବା ଜନ୍ତୁ ? ପଛକୁ ଏକା ଜିଦ କଲା । କଣ କରିବ ? ବେଙ୍ଗୁଲିକୁ ପଣ୍ଡିଅଣୀ ହଳଦି ଲଗେଇ ଦେଲା, ମାଲିପା ଲଗେଇ ଦେଲା, କନା ଖଣ୍ଡିକରେ କଉଡ଼ି ଚାରିକଡ଼ା ବାନ୍ଧି ବେଙ୍ଗୁଲି ଅଣ୍ଟାରେ ଗୁଡ଼େଇ ଦେଲା । ବେଙ୍ଗୁଲି ବାହାରିଲା ଯାତକୁ । ଯାଉଁ ଯାଉଁ ବାଟରେ ଏକ ପୋଖରୀ ପଡ଼ିଲା । ଚାରି ଅଡ଼କୁ ଚାହିଁଲା, କେହି ନାହିଁ । ବେଙ୍ଗୁଲି-ଖୋଳ ଭିତରୁ ଗୋଟିଏ ଉତ୍ତମ ସୁନ୍ଦର ମାଇପିଟିଏ ବାହାରିଲା, ସେ ପୋଖରୀରେ ଗାଧୋଇଲା, ପାଧୋଇଲା । ଏତିକି ବେଳେ ଜଣେ ବ୍ରାହ୍ମଣ ଟୋକା ଅସି ପୋଖରୀକୂଳରେ ପହଞ୍ଚିଲା । ସେ ମାଇପିଟି ଟୋକାକୁ ଦେଖିଲାକ୍ଷଣି ତରବର ହୋଇ ବେଙ୍ଗୁଲି-ଖୋଳ ଭିତରେ ପଶିଗଲା । ଦେଖିଲା ବେଳକୁ ସେଠେଇଁ କେହି ନାହିଁ, ବେଙ୍ଗୁଲିଟିଏ । ବ୍ରାହ୍ମଣ ଟୋକା ଦେଖି ଭାରି ଅଚମ୍ଭିତ ହେଲା । ମନ କଥା ମନରେ ଥାଏ, ପାଖ ଅଖ ଲୋକଙ୍କୁ ପଚାରିଲା, ସେ କେଙ୍ଗୁଲିଟି କିଏ ? ସମସ୍ତେ

କହିଲେ,'ସେ ଅମୁକ ଗାଁ ପଣ୍ଡାର ଝିଅ' । ସେ ଟୋକା ଅପଣା ଘରକୁ ଫେରି ଗଲା, ଖାଇଲା ନାହିଁ, ପିଇଲା ନାହିଁ, ଏକା ଜିଦ୍ ଧରିଲା ସେ ବେଙ୍ଗୁଲିକି ବିଭା ହବ ବୋଲି । ମରମ କଥା ତ ଫଡାଲେକ କେହି ଜାଣି ନ ଥାନ୍ତି । ଯେ ଶୁଣିଲା, ସେ ହସିଲା । ସମସ୍ତେ ଛି ଛି କଲେ ।

ହେଲେ କଅଣ ହବ, ଟୋକାର ଏକା କଥା । ପଣ୍ଡା ପଣ୍ଡିଆଣୀଙ୍କ ପାଖକୁ ମଣିଷ ଗଲା । ପଣ୍ଡିଆଣୀ ଅଗକର ମଙ୍ଗିଲା । ବିଭାଘର ହେଲା । ସାତମଙ୍ଗଳା ସାରିଲାରୁ ପଣ୍ଡା ବୋଝ ଭାର ଦେଇ ବେଙ୍ଗୁଲିଟିକି ଶାଶୁଘରକୁ ବିଦା କରି ଦେଲା । ବେଙ୍ଗୁଲି ଶାଶୁ ବେଙ୍ଗୁଲିକି ଦେଖିଲା, କେତେ ରଡେଇ ଗଡେଇ ହେଲା, 'ନାଅଁଷିଘର ଝିଅ, ପୁଡଖାଇଘର ଝିଅ, ମୋ ପୁଅକୁ ସାଇଲା' ଇମିତ କେତେ ଚଲି ହେଲା । ଏଣେ ବ୍ରାହ୍ମଣ ଟୋକା ତା ଖଞ୍ଜରେ ଥାଏ, କାହାକୁ କିଛି କହେ ନାହିଁ । କଅଣ ମନେ ମନେ ବିଗୁରି ଭାବ ଅନନ୍ଦରେ ଥାଏ । ମାକୁ ନାତ କେତେ ନେହୁରା ହୁଏ, କେତେ ଗୋଡ଼ତଳେ ପଡ଼େ—'ମା ଲୋ ମା ! ବେଙ୍ଗୁଲିକି ଗାଳି ଦବୁ ନାହିଁଟି, ବେଙ୍ଗୁଲିକି ମାରବୁ ନାହିଁଟି ।' ଶାଶୁ କି ଯା ଶୁଣି ଥିବ ହୁଏ ? କାହିଁ ପୁଅ ଜନମ କରିଥିଲା, ବୋହୂଟିଏ ଅସିଥିଲେ କେତେ ଅଡ଼ତପନ କରିଥାନ୍ତା, କେତେବେଳେ ଅବା ମାଲ୍ପା ଟିକିଏ ମାରି ଦଉଥାନ୍ତା, କାହିଁ, ଦେଖିଲା ବେଳକୁ ଏକ ଫରକଟାଗୋଡ଼ ହାଡ଼ଅଁପାଟିଆ ବେଙ୍ଗୁଲି ! ସାଇ ମାଇପେ ଦାଣ୍ଡରେ ଚଳେଇ ଦଉ ନାହାନ୍ତି । ମନେ ମନେ ଦହି ହଉଥାଏ । ଏଣେ ପୁଅମୁହଁକୁ ତ କିଛି କହି ପାରୁ ନ ଥାଏ ।

ଦିନେ ଟୋକା ଯାଇଥାଏ କୂଅଡ଼ିକୁ । ଶାଶୁ ବେଙ୍ଗୁଲିକି ନାସୁକ ଠାକେ ଛେଚିଲା । ମୁଠାଏ ଖଡ଼କା ତା ଉପରେ

ଉଡ଼େଇ ଦେଲା, ପଛରେ ବେକରେ ହାବୁଡ଼ା ଦେଇ ପଦାକୁ ଛଡ଼ ଦେଲା । ବେଙ୍ଗୁଲି ଯାଇ ବାଡ଼ିଅଡ଼େ ଗୋଟିଏ ସାରୁ ଗଛମୂଳେ ପାଣ୍ଡେର ପାଡ଼ି ବସିଥାଏ । ଟୋକା ସନ୍ଧ୍ୟାବେଳକୁ ବୁଲି ବୁଲି ଘରକୁ ଆଇଲା । ଦେଖିଲା ଘରେ ବେଙ୍ଗୁଲି ନାହିଁ । ମାକୁ ପଚାରିଲା, ମା କହିଲା 'କେ ଜାଣି' । ଟୋକା କେତେ ଆଡ଼ ଖୋଜିଲା, ଆଉ ପାଇଲା ନାହିଁ । ପଛକୁ ଦେଖିଲା-ବେଳକୁ ବେଙ୍ଗୁଲି ବାଡ଼ିଅଡ଼େ ସାରୁଗଛମୂଳେ ବସିଛି । ଟୋକା ଡାକିଲା, 'ହଇଲୋ ବେଙ୍ଗୁଲି, ଘରକୁ ଆ ।' ବେଙ୍ଗୁଲି ଆଉ ସେଠଉଁ ଚଳିବାକୁ ନାହିଁ । କହିଲା,

'ତୋ ମା ମତେ ଗୁଣ୍ଠ କଲା, ପାଠ କଲା,
ଗୁଞ୍ଜୁଣି ବାଡ଼ିରେ ପଣେ ମାଇଲା,
ବେକ ଧରିକରି ହାବୁଡ଼ା ଦେଲା,
ଆଉ କି ବେଙ୍ଗୁଲି ଘରକୁ ଯାଏ ?'

ଶାଶୁ ଆସିଲା ବେଙ୍ଗୁଲିକି ଡାକିବାକୁ । 'କି ଲୋ ବେଙ୍ଗୁଲି, ଘରକୁ ଆ ।' ବେଙ୍ଗୁଲି କହିଲା,

'ତୁ ପରା ମୋତେ ଗୁଣ୍ଠ କଲୁ, ପାଠ କଲୁ,
ଗୁଞ୍ଜୁଣି ବାଡ଼ିରେ ପଣେ ମାଇଲୁ,
ବେକ ଧରି କରି ବାହାର କଲୁ,
ଆଉ କି ବେଙ୍ଗୁଲି ଘରକୁ ଯାଏ ?'

ଫେର ପଛକୁ ଟୋକା କେତେ ନେହୁରା ହେଲା, ଶାଶୁ ଧାନ୍ତରେ କୁଣ୍ଠା ହେଲାରୁ ବେଙ୍ଗୁଲି କହିଲା,

'ସାରୁନଡ଼ା ଦି'ଖଣ୍ଡ ପେଁଧାଲି ହବ,
ଗବଡାଙ୍ଗ ଦି'ଖଣ୍ଡ ଝଟିଆ ହବ,
ଝିଙ୍କର ଦି'ଖଣ୍ଡ ବାଇଦ ହବ,

ସାତସାଇ ପିଲ୍ଲାଯାକ ରୁଣ୍ଡ ହେବେ,
ବେଙ୍ଗୁଲି ଅଇଲା ବୋଲି ଚହଳ ପଡ଼ିବ,
ତେବେ ଯାଇଁ ବେଙ୍ଗୁଲି ଘରକୁ ଯିବ !'

ପଛକୁ ଶାଶୁ କଅଣ କରିବ ? 'କୋଳଥ ତଅଣ ଖୋଇଛୁ ଯେ, ରାତରେ ହଗେଇ ନ ଉଠୁ ସେ ।' ଶାଶୁ ଯାଇଁ ସାତ ସାଇପିଲାଙ୍କୁ ରୁଣ୍ଡ କଲା, ଗବଡାଙ୍ଗ ଦ'ଟେଣ୍ଡ୍ରେ ଖଟିଅ କଲା, ସାରୁନଡ଼ା ଦ'ଖଣ୍ଡ ପେଁକାଳି କଲା, ହିଙ୍କର ଦ'ଖଣ୍ଡ ବାଇଦ ହେଲା, ବେଙ୍ଗୁଲି ଅଇଲା ବୋଲି ଚହଳ ପଡ଼ିଲା, ବେଙ୍ଗୁଲି ଯାଇ ଘରକୁ ଅଇଲା । ଘରେ ଥାଏ । ବେଙ୍ଗୁଲି କଅଣ କରେ—ଦିନଯାକ ହାଣ୍ଡିଶାଳ କଣରେ ପଶିଥାଏ । ଦେଖେ କେହି ନାହାନ୍ତି, ସେତିକିବେଳେ ସେ ମାଇପିଟି ବେଙ୍ଗୁଲି-ଖୋଳରୁ ପଦାକୁ ଅସି ହାଣ୍ଡି କୁଣ୍ଡେଇ ଧୁଏ, ଭାତ ତଅଣ ରାନ୍ଧି ଥୁଏ, 'ସାତ ତଅଣ ଅଠ ଭଜା କରି ରଖି ଦିଏ, ଦୁଧ ଅଉଟି ଦିଏ, ପଛକୁ ଟୋପେ ଦୁଧ ପିଇ ଫେର୍ କିଏ ଅଇଲା ବେଳକୁ ଖୋଳରେ ପଶିଯାଏ । ସମସ୍ତେ ଦେଖି କାବା ହୁଅନ୍ତି । କିଏଁ କେତେ କଥା କହିଲେ । ରାତରେ ଟୋକା ଯେଉଁ ଘରେ ଶୁଏ, ବେଙ୍ଗୁଲି ସେହି ଘରେ ଶୁଏ । ଟୋକା ଶୋଇପଡ଼ିଲାରୁ ବେଙ୍ଗୁଲି-ଖୋଳରୁ ସେ ତରଲଟି ବାହାରି ପଦାକୁ ମୂତିଯାଏ, ଫେର୍ ଅସି ଖୋଳରେ ପଶିଯାଏ । ଦିନେ ସେ ଟୋକା କଅଣ କଲା, ବେଙ୍ଗୁଲି ରାତରେ ଶୋଇଲା ଘରକୁ ନ ଅସୁଣୁ ସେ ଟୋକା ଏକ ହାଣ୍ଡି ତଳେ ଗୋଟିଏ ଦୀପ ଘୋଡ଼େଇକରି ରଖିଥାଏ । ବେଙ୍ଗୁଲି ଅଇଲାବେଳକୁ ଟୋକା ପିଛରେ ମିଛରେ ଘୁଙ୍ଗୁଡ଼ି ମାରୁଥାଏ । ବେଙ୍ଗୁଲି ବିଚାରିଲା ଅବା ଟୋକା ଶୋଇଲାଣି, ମୁତା ବିଚାରି ସେ ଖୋଳରୁ ବାହାରି ପଦାକୁ ମୂତିବାକୁ ଗଲା । ଟୋକା ତ ଚେଇଁକରି ଶୋଇଥିଲା । ସେହିକ୍ଷଣି ଟେକି ଅସି ବେଙ୍ଗୁଲିଚମ ଖୋଳରେ ନିଅ ଟିକିଏ ଲଗେଇ ଦେଲା ।

ଚମଖଣ୍ଡି ଫୁର୍‌ର୍ ଜଳି ପୋଡ଼ିଗଲା । ସେ ମାଇପିଟି ଅସି ଦେଖିଲା ବେଳକୁ କଥା ସରିଲାଣି । ଟୋକାକୁ କହିଲା, 'ଅହା ! କ କଲୁ ! କ କଲୁ ! ମୋ ଚମ ଖଣ୍ଡିକ ପୋଡ଼ି ଦେଲୁ ! ମୁଁ କମିତି ବଞ୍ଚିବି ? ମୋ ଦେହ ହାତ ପୋଡ଼ୁଛି ।' ଟୋକା କହିଲା, 'ଯା ନା ଗୋଟାଏ କଥା ! ମୁଁ ଅଜାଯାକେ ଲାଜରେ ମରିଲିଣି, ଯେ ଦେଖୁଛି ସେ ଛି ଛି କରୁଛି । ମୁଁ ସେଦିନ ପୋଖରୀକୂଳେ ତତେ ଦେଖିଥିଲି, ବାହା ହେଲି । ଏଣିକ ତୁ ମୁଁ ଆନନ୍ଦରେ ଘର ଦୁଆର କରିବା । ଦିହ ହାତ ପୋଡ଼ିଲେ ହଳଦି ବୃଅ ଚନ୍ଦନ ଲଗା ।' ଗେରସ୍ତ ଭାରିଯା ଦିହେଁଯାକ ଦୁଃଖ ସୁଖ ହଉ ହଉ ରାତି ପାହିଗଲା । ସକାଳକୁ ସେ ଦିହେଁ ଅନିଦ୍ରାରେ ଶୋଇ ପଡ଼ିଲେ—ଦିନ ଅସି ଦ'ଘଡ଼ି ହେଲାଣି; ଶୋଇଲା ଘର କବାଟ କିଲା ହୋଇଛି । ଯେତେ କବାଟରେ ମାଇଲେ କବାଟ ଫିଟିଲା ନାହିଁ । ପଛକୁ ଗୃଳ ଜଣା କରି ଘରେ ପଶିଲେ । ଦେଖିଲା ବେଳକୁ ପୁଅ ସାଙ୍ଗରେ ଏକ ଦିବ୍ୟସୁନ୍ଦର ଷୋଳବରଷୀ ମାଇପିଟିଏ ଶୋଇଛି । କବାଟ ଫିଟେଇ ଟୋକା ଦାଣ୍ଡ ଅଡ଼କୁ ଗଲା ବାହାରି । ବୋହୂ କବାଟ କଣରେ ଲୁଚିଗଲା । ସମସ୍ତେ ଦେଖି ଅଚମ୍ବିତ ହେଲେ । ଚହଳ ପଡ଼ିଲା, ସାତସାଇପିଲା ରୁଣ୍ଡ ହେଲେ । ଏ ଟୋକା ଅଗ କଥାଯାକ ସବୁ କହିଲା । ଶାଶୂ ବୁଢ଼ୀ ତ ଆନନ୍ଦରେ ତଳେ ଠିଆ ହେବାକୁ ନାହିଁ, ଗାଁଯାକ ମାଇପଙ୍କୁ ଡାକି ଅଣି ଅପଣା ବୋହୂକୁ ତାଙ୍କୁ ଦେଖାଉଛି । ଦିହେଁଯାକ ଘର ଦୁଆର କଲେ, ମୁଁ ଗଲାରୁ କଥା କହିଲେ ନାହିଁ ।

# କାଇଁଚମାଳୀ

ଏକ ନଗରରେ ଗଉଡ଼ଟିଏ ଗଉଡ଼ୁଣୀଟିଏ ଥାଆନ୍ତି । ତାଙ୍କର ଯୋଡ଼ିଏ ପୁଅ ଝିଅ ଜାଆଁଳା । ଦୁହେଁଯାକ ପିଲା ହେଉଥାନ୍ତି । ଦିନେ ଦାଣ୍ଡକୁ ଭୁଜା-ବିକା ଆସିଥାଏ, ଝିଅ ମା ସାଙ୍ଗରେ ଲଗେଇଲା ଭୁଜା କିଣିବାକୁ । ଏକ ଜିଦ ଧରିଲା, ଅବୁଝା ହେଲା । ଏଣେ ମା ଠେଇଁ କଉଡ଼ିଏ କଉଡ଼ି ନ ଥାଏ । ପଛକୁ ମା ଘର ବ୍ୟସ୍ତ ହୋଇ ଦହି ମୋହୁଁଥିଲା । ଝିଅଦାଉ ସମ୍ଭାଳି ପାରିଲା ନାହିଁ । ଶୁଆରେ ଧରିକରି ଝିଅକୁ ବାଡ଼ିଏ ପକେଇଲା, ହାବୁକା ଦେଇ ବାଡ଼ିଦୁଆରକୁ ବାହାର କରି ଦେଲା । ଏଣେ ବାପ ଯାଇଥିଲା ଗୋଠକୁ, ହାତରେ ଛଡଟି ଧରି ଘରକୁ ଫେରି ଆଇଲା ବେଳେ ଦେଖେ, ଝିଅ ବାଡ଼ିଆଡ଼େ ବସି ସକୋଉଛି । ବାପ ଯେତେ ବୁଝେଇଲା ସୁଝେଇଲା, ଝିଅ ଏକା ଅବୁଝାମଣା କଥା ଧରିଥାଏ । ବାପ ପଛକୁ ଘରି ବିରକ୍ତ ହେଇ ଝିଅକୁ ଛଡରେ ପାହାରେ ପକେଇଲା । ଭଉଣୀ କାନ୍ଦ ଶୁଣି ଭାଇକି କାନ୍ଦ ମାଡ଼ିଲା । ଭାଇ ଭଉଣୀ କାନ୍ଦକାନ୍ଦକା ଘରୁ ବାହାରିଗଲେ । ଏକମୁହାଁ ହୋଇ ଯାଉଥାନ୍ତି । ଯାଇଁ ଯାଇଁ ବାଟରେ ଭାରି ବାଧି ଗଲା । ଗୋଟିଏ ଗଛମୂଳେ ଥକାମରା ହେଇ ବସିଥାନ୍ତି, କଇଁ କଇଁ ହେଇ କାନ୍ଦୁଥାନ୍ତି । ସେତିକି ବେଳକୁ କଣ ହେଉଛି, ନା ସେ ନଗର ସାଧବପୁଅ ଆସିଛି ବୁଲି । ତା ବେକରେ ଏକ କାଇଁଚମାଳି ଥାଏ । ଝିଅ ସେ କାଇଁଚମାଳିକି ଦେଖି ନେବି ବୋଲି ଭାଇ ସାଙ୍ଗରେ ଲାଗି ଅଳି କଲା । ଭାଇ କଅଣ କରିବ ? ସାଧବ ପୁଅକୁ ଯାଇଁ କହିଲା । ସାଧବପୁଅ କହିଲା, 'ସେ କାଇଁଚ-

ମାଲିକ ଯେ ନବ, ମୁଁ ତାଙ୍କୁ ବାହା ହେବ ।' ଭଉଣୀ ତ ଏକା କଥା ଧରିଛି । ସାଧବପୁଅ କାଇଁଚମାଲିଟି ଦେଲା । ଭାଇ ଭଉଣୀ ଦୁହିଙ୍କି ତା ଘରକୁ ସାଙ୍ଗରେ ନେଇଗଲା । ଭଉଣୀକି ବାହା ହେଲା । ଦିନାକେତେ ଗଲାରୁ ତାର ମାସ ଗଡ଼ିଲା ।

ଏଣେ ଫେର ହେଇଥାଏ କଣ, ସାଧବର ଅଉ ଛ ଭାରିଯା ଥାଆନ୍ତି, ମା ଥାଏ । ସେ ସମସ୍ତେ ଏ ଗର୍ଭିଣୀ ଅଇଲା ଦିନୁ ତାଙ୍କୁ ଦେଖି ପାରନ୍ତି ନାହିଁ । ସାଧବର ମା ସ୍ତ୍ରୀ ଉପରେ ସବୁବେଳେ ରବେଇ ଖବେଇ ହଉଥାଏ । ଦିନେ ସାଧବ ଘରେ ନାହିଁ, ଯାଇଛି ବୋଇତରେ ବଣିଜ କରିବାକୁ, ବୋହୂର ଦଶ ମାସ ଦଶ ଦିନ ପୂରିଲା । ଏ ଦୁଃଖ ପାଇଲା । ଛ ସଉତୁଣୀଯାକ ଅଉ ମା ଏ ସମସ୍ତେ ବାଟଘାଟର ହେଲେ । ସାଧବ ମା କଣ କଲା, ତାଙ୍କୁ ସୂତାନଟିଟିଏ ଦେଲା । ସୂତାନଟିରେ ସୂତା ଗୁଡ଼ିଅ ହେଇଥାଏ, ତାଙ୍କୁ କହିଲା, 'ତୁ ଏ ସୂତାନଟିଟିକି ଧରି ସୂତା ଫିଟେଇ ଫିଟେଇକା ଏକାମୁହାଁ ହୋଇ ଯାଉଥା । ଯେଉଁଠି ଏ ସୂତାଲୁଣ୍ଡି ଛୁଡ଼ିବ, ସେଠେଇ ପୋଖତ ହବୁ ।' ବୋହୂ କଣ କରିବ, ଅପଣା କରମକୁ ଅଦରି ଗଲା । ଭାଇ ଦିହରେ ଏ କଥା ଗଲା ନାହିଁ । ଭାଇ ତା ସାଙ୍ଗେ ସାଙ୍ଗେ ଗଲା । ଯାଉଁ ଯାଉଁ ଏକ ଅଗନାଅଗନା ବନସ୍ତ ପଡ଼ିଲା, ସେଠେଇଁ ସୂତାଲୁଣ୍ଡିଟି ସରିଲା । ଏ ସେଠେଇଁ ପୋଖତ ହେଲା । ଉତ୍ତମ ସୁନ୍ଦର ବାଳୁତଟିଏ ଜନମ କଲା । ଭାଇ କଅଣ କଲା, ବନସ୍ତରୁ କାଠ କୁଟା ଗୋଟେଇ ଅଣି ଅନୁଡ଼ି ଜାଳିଲା । ପୁଅ ମା ଦିହିଙ୍କି ବଣରେ ଛାଡ଼ି ଦେଇ ଗଲା ସାଧବ ଘରକୁ ଭଉଣୀପାଇଁ ଭାତ ଅଣିବାକୁ । ଛ ସଉତୁଣୀ ଯାକ ଅଉ ସାଧବାଣୀ ବୁଢ଼ୀ ଅଗରୁ ବସିଥିଲେ, ଭାଇ ଭଉଣୀ ସଢେ ଅଉ ବାଘ ମୁହଁରୁ ବର୍ତ୍ତିବେ ସେ ଫେରିବେ । ଦେଖେ ତ, ଦିନେ ଭାଇ ଫେର ଅଇଲା । କହିଲା, 'ଭଉଣୀ ଇମିତ ଏକ ଉତ୍ତମ ସୁନ୍ଦର

ପୁଅ ଜନମ କରିଛୁ । ଭଉଣୀପାଇଁ ପଥି ନରାଖି ମୁଁ ଆସିଛୁ' । ଛ ସଉତୁଣୀଯାକ ବିଚାରବିଚାର ହୋଇ ନାଗସାପମୁଣ୍ଡଟିଏ ଚୂରି ଭାତ-ଭାତରେ ଗୋଳେଇ ଦେଇ ଟୋକାକୁ ଦେଲେ । ଟୋକା ପଚାରିଲା, 'ଏ ଚୂନା ଚୂନା ଭାତ ଉପରେ କଣ ଦିଶୁଛି ?' ଛ ସଉତୁଣୀଯାକ କହିଲେ, 'ରାଜସମ ଗୁଣ୍ଡା ପରା ଆମେ ପଥିରେ ଗୋଳେଇ କରି ଦେଇଛୁ ।' ଏ ଟୋକା ତ ଏତେ ଛନ୍ଦ ଜାଣେ ନା । ଯାଉ ଯାଉ ମହାପ୍ରଭୁ ଏକ କୂଟ କଲେ । କୁଅଟିଏ ଆସି ଏ ଭାତ କଂସାରେ ଅଣ୍ଟା ମାରିଦେଲା ଯେ ଭାତଯାକ ଗୋଟିକଠାଜ ତଳେ ବୁଣିଗଲା । ଭାଇ କଅଣ କରିବ, କାନ୍ଦି କାନ୍ଦି ଭଉଣୀ ପାଖକୁ ଗଲା । ଭାତ ବୁଣି ଗଲା ବେଳେ ଗୋଟିଏ ଭାତ କମିତି ଛୁଙ୍କି କରି ଭାଇ ଗୋଡରେ ଲାଗିଥାଏ । ଭଉଣୀ ପାଖରେ ଭାଇ ଯାଇ ଖାଲି ହାତରେ ପହଞ୍ଚିଲା ବେଳକୁ ଭଉଣୀ ଗୁହାଁ ଦେଲା ହାତରେ ତୁଛା କଂସାଟିଏ । ଭାଇ ଭଉଣୀ ଦିହେଁଯାକ କାନ୍ଦି କାନ୍ଦି ରହିଲେ । ଭାଇ ଗୋଡରେ ଯେଉଁ ଭାତଟି ଲାଗିଥାଏ, ସେ ଭାତଟି ଉପରେ ଯିମିତି ଭଉଣୀର ଆଖି ପଡ଼ିଲା, ଭଉଣୀ ସେ ଭାତଟିକି ଟୋକି ଦେଲା । ଯିମିତି ଟୋକି ଦେଇଛି, ଗୁହୁଁ ଗୁହୁଁ ଭଉଣୀଟି ସିମିତି ଗୋଟାଏ ପାଞ୍ଚ ହାତ ଲମ୍ବ ନାଗସାପ ହୋଇ ବଣ ଭିତରକୁ ଚାଲିଗଲା । ଭାଇର ଯା ଦେଖି ହାଲକ ଶୁଖିଗଲା । ଏଣେ ହୁଡିଅଣି ପିଲା ଅଗରେ ଶୋଇଛି, ଦଣ୍ଡେ ଦୁଧ ନ ପିଇଲେ ତାଳୁକା ଶୁଖିଗଲାରୁ ଚୂଠିକିନା ସାହା ଛୁଡ଼ ଯିବ । ପୁଅକୁ ଖେଳ କଲାରୁ ଭାଇ ଜକର୍ଥନା ହୋଇ କାନ୍ଦିଲା । ଏ ଏବେ ଅଣ୍ଡିରି ପୁଅ, କରୁଛି କଣ ? ସେଇଥିରୁ ଅଜ ତ କିଛି ବୁଦ୍ଧି ଦିଶିଲା ନାହିଁ । ଭଉଣୀକି ବାହୁନି କରି କାନ୍ଦିଲା—

"ମା ମାଇଲା ଖୁଆ ବାଡ଼, ବାପା ମାଇଲା ଛନ୍ଦବାଡ଼,
କାଉଁଚମାଳ ଦେଇ ସାଧବ ବିଭା ହୋଇଲେ ଗୋ ।
ସୂତାନଟି ଦେଇ ସାଧବାଣୀ ବନେ ଘଞ୍ଚିଲେ ଗୋ ।
ଛଅ ସଉତୁଣୀ ନାଗ ମୁଣ୍ଡ ଚୂର ଏଜେଇଲେ ଗୋ ।
ସର ! କାନ୍ଦୁଅଛୁ ତୋ ବାଳୁତ କୁମର,
　　　　　　　　　　　　　　ଦେଇ ଯା ଅସି କ୍ଷୀର ।"

ସତକୁ ସତ ବଣରୁ ନାଗ ସାପଟିଏ ଅସି ପୁଅ ପାଖରେ ପେଡ଼ା ପର ଗୁଡ଼େଇହୋଇ ଶୋଇଲା । ପୁଅ ସେ ସାପଠଉଁ ଚଁ ଚଁ କର ପେଟେ ଦୁଧ ପିଇଲା । ପୁଅ ଦୁଧ ପିଇ ସାରଲାରୁ ସାପଟି ବନସ୍ତ ଭିତରକୁ ଲମ୍ବେ ଲମ୍ବେ ଗୁଳିଗଲା । ଫେର ପହରେ ଗଲାରୁ ପୁଅକୁ ଭୋକ କଲାରୁ ପୁଅ କାନ୍ଦେ, ପୁଅ କାନ୍ଦଲାରୁ ଏ ଟୋକା ଜଣ ଜଣରେ ନା ବାହୁନା କର ଗୀତ ବୋଲେ—

ମା ମାଇଲା ଖୁଅବାଡ଼, ବାପ ମାଇଲା ଛନ୍ଦବାଡ଼,
କାଉଁଚମାଳ ଦେଇ ସାଧବ ବିଭା ହୋଇଲେ ଗୋ ।
ସୂତାନଟି ଦେଇ ସାଧବାଣୀ ବନେ ଘଞ୍ଚିଲେ ଗୋ ।
ଛଅ ସଉତୁଣୀ ନାଗ ମୁଣ୍ଡ ଚୂର ପକେଇଲେ ଗୋ ।
ସର ! କାନ୍ଦୁଅଛୁ ତୋ ବାଳୁତ କୁମର,
　　　　　　　　　　　　　　ଦେଇ ଯା ଅସି କ୍ଷୀର ।

ଗୀତ ବୋଲିବାରୁ ସାପଟି ଅସି ପିଲାକୁ ଦୁଧ ଦେଇ ଫେର ବଣକୁ ଯାଏ ବାହାର । ପେଟ ପୂରଲାରୁ ପୁଅ ଦଣ୍ଡେ ଖେଳେ, ଅପଣା ସୁଖେ ନିଦରେ ଶୋଇ ପଡ଼େ । ପୁଅ ଶୋଇ ପଡ଼ଲାରୁ ଏ ଟୋକା ବଣରୁ ଫଳମୂଳ ଗୋଟେଇ ଅଣି ଖାଏ, ଏ ଭୁତଅଣି ପିଲା ପାଖରେ ଧନ ଗୁଡ଼ ଜଗିଥାଏ ।

ଏଣେ ହେଉଛି କଣ ନା, ସାଧବପୁଅ ବଣିଜ କରି ସାତ ବୋଇତ ଘେନି ଘରକୁ ଫେରୁଥାଏ । ବୋଇତକୁ ଦରିଅକୂଳରେ ରଖି ସେହି ବନସ୍ତ ବାଟେ ଫେରିଲା ବେଳକୁ ଏ ଝୋଟିର ବାହୁନା ସାଧବ କାନରେ ପଡ଼ିଲା । ଶବଦ ବାରିବାରିକା ଏ ସାଧବ ଆସି ଦେଖିଲାବେଳକୁ ବନସ୍ତ ମଝିରେ ଭଅଁଳା ପିଲାଟି କୁଅଁ କୁଅଁ ହୋଇ କାନ୍ଦୁଛି, ମିଣିପଟିଏ ତା ପାଖରେ ବସି ବାହୁନାକର ଗୀତ ବୋଲୁଛି । ସାଧବ ଦୋଦୋପାଞ୍ଚ କରି ଗଛ ଅଢ଼ୁଆଳରେ ବସି ଚାହିଁଥାଏ । ଦେଖିଲା ବେଳକୁ ବନସ୍ତ ଭିତରୁ ନାଗସାପଟିଏ ଆସି ଭଅଁଳା ପିଲାକୁ ଦୁଧ ଦେଲା, ଦେଇ କରି ଆପଣା ମୁହେଁ ଯେଉଁ ଅଣ୍ଡା ଆସିଥିଲା, ସେହି ଅଣ୍ଡାକୁ ଗଲା ବାହାରି । ସାଧବ ମନ ଆଉ ସମ୍ଭାଳି ହେଲା ନାହିଁ । ଆପଣା ଶଳାକୁ ଚିହ୍ନିଲା । ସବୁ କଥା ପଚାରିଲାରୁ ଏ ଝୋଟି ଅଗରୁ ମୂଳଯାଏ ସବୁ କଥା କହିଗଲା । ସାଧବପୁଅ ଜିଭ କାମୁଡ଼ି ପକାଇ ଥକାମରା ହୋଇ ବସିଗଲା । କହିଲା, 'ଆଉ କି ମୁହଁ ଅଛି ଯେ ମୁଁ ଘରକୁ ଫେରିଯିବି ?' ଇମିତି ଶଳା ଭିଣେଇଁ ଦହେଁଯାକ ସେ ପିଲାଟି ପାଖରେ ବସିଥାନ୍ତି । ନିଶାଗତ ହେଲା, ପୁଅକୁ ଘେରି କଲାରୁ ପୁଅ କାନ୍ଦିଲା । ଏ ଫେର ସିମିତି ଗୀତ ବୋଇଲା । ଏଣେ ହୋଇ ଥାଏ କଣ, ସେତିକି ବେଳେ ଈଶ୍ୱର ପାର୍ବତୀ ବାହାରିଥାନ୍ତି ବୁଲି । ପାର୍ବତୀଙ୍କ କାନରେ ଏ ବାହୁନା ପଡ଼ିଗଲା । ପାର୍ବତୀ ପଚାରିଲେ ଈଶ୍ୱରଙ୍କୁ, 'ହଇହୋ ! ଏ ତ ମଣିଷ ସ୍ୱର ପରି ଶୁଭୁଛି । ଏତେ ରାତିରେ ବନସ୍ତରେ କିଏ କାନ୍ଦୁଛି ମ ?' ଈଶ୍ୱର କାଅଁରେଇ ଦେଲେ, 'ମାଇପି ଜାତିଙ୍କର ଏଇ ଯେଉଁ କଥା । ଘରକୁଣି କି ପିଡାଶୁଣି କିଏ କାନ୍ଦୁଛି, ଆମର କଣ ଗଲା ?' ପାର୍ବତୀ ଏକା ଅବୁଝା ହେଲେ, କହିଲେ, 'ଚାଲ ଯିବା, ଦେଖିବା ।' ଈଶ୍ୱର ଆଉ ଯେତେ ଭୁଲେଇଲେ କି ପାର୍ବତୀ ଭୁଲନ୍ତି ? ପଛକୁ ଭାରି ଜିଦ

କାଲରୁ ଈଶ୍ୱରପାର୍ବତୀ ଯାଇ ପହଞ୍ଚିଲେ । ଦେଖିଲାବେଳକୁ ଏ ଦମ୍ପତି ମିଣିପେ ବସିଛନ୍ତି, ସାପଟାଏ ପେଡ଼ା ପର ଗୁଡ଼େଇ ହୋଇ ପଡ଼ିଛି, ଡଢଅଣି ପିଲାଟି ସାପଠଉଁ ଦୁଧ ପିଉଛି । ଈଶ୍ୱରପାର୍ବତୀ ସବୁ କଥାଯାକ ଶୁଣି ସାରଲେ, ପାତୁକପାଣି କର ଅଞ୍ଜୁଳାଏ ଛିଞ୍ଚି ଦେଲାରୁ ଦବ୍ୟସୁନ୍ଦର ମାଇପିଟିଏ ଓଢ଼ଣା ପକେଇ ଠିଆ ହୋଇଗଲା । ଭାଇକି କହିଲା, 'ଅହା ! ଶୋଇ ଶୋଇ କେତେଗୁଡ଼ାଏ ଶୋଇ ପଡ଼ିଲ !' ଭାଇ ସେଠଉଁ ସବୁ କଥାଯାକ କହିଗଲା । ଭାଇ ଭଉଣୀ ଗେରସ୍ତ ସମସ୍ତେ କୁଣ୍ଢିଆ କୁଣ୍ଢେଇ ହୋଇ କାନ୍ଦଲେ । ପିଲାଟିକି କାଖେଇ ସାଧବ ଘରକୁ ଗଲେ । ସାଧବ ଘରେ ପହଞ୍ଚିଲାରୁ ଏକ ଖଣିଗାତ ଖୋଳେଇଲା । ଛ ସଜତ୍ତୁଣୀଙ୍କୁ କହିଲା, 'ଦେଖିଲ ଯାଇ ଏ ଖଣିଗାତରେ କେତେ ଧାନ ସମ୍ଭେଇବ ?' ଛ ଜଣଯାକ ନଇଁ ପଡ଼ି ଖଣି ଭିତରକୁ ଗୁହିଁଲାବେଳକୁ ସାଧବ ଛ ଜଣଙ୍କୁ ଖଣିକି ଫେଲି ଦେଲା, ତଳକଣ୍ଟା ଉପରକଣ୍ଟା କର ଖଣିକି ପୋତେଇ ପକେଇଲା । ଭାଇଯା, ଶଳା, ପୁଅ ସ୍ତ୍ରୀଙ୍କୁ ଘେନି ଘରଦୁଆର କଲା । ମୁଁ ତଳାରୁ ମୋତେ ଶନ୍ଧି ପାଇଲା ନାହିଁ ।

# ନେଇ ଆଣି ଥୋଇ ଜାଣିଲେ ଚୋରବିଦ୍ୟା ଭଲ ।

ଏକ ରାଇଜରେ ଏକ ରଜା ଥାଆନ୍ତି । ଦିନେ ରଜା ପଚାରିଲେ ମନ୍ତ୍ରିଙ୍କି, 'କହ ହେ ମନ୍ତ୍ରି, ସଂସାରରେ ଭଲ କେଉଁ ବିଦ୍ୟା ଭଲ ?' ମନ୍ତ୍ରୀ କହିଲେ, 'ନେଇ ଆଣି ଥୋଇ ଜାଣିଲେ ଚୋରବିଦ୍ୟା ଭଲ ।' ରଜାଙ୍କର ଏ କଥା ଥାଏ ମନେ । ରାତି ହେଲରୁ ରଜା ନଅରରୁ ଅନ୍ଧାର ବିଜେ କଲେ, ମନ୍ତ୍ରିଙ୍କ କଥାରେ ସତ ବାଛିବାକୁ । ଯାଇ ପହଞ୍ଚିଲେ ଏକ କୁମ୍ଭାରଶାଳରେ ଚୋରି କରିବାକୁ । କୁମ୍ଭାର ସେ ଦିନ କୁହାରୁ ହାଣ୍ଡି ଯାକ କାଢ଼ିଥାଏ । ହାଣ୍ଡି ଯାକ ଶାଳରେ ଗୋଟିଏ ଉପରେ ଗୋଟିଏ ଉଗୁଡ଼ାଇ କରି ରଖିଥାଏ । ରଜା କଣ କଲେ, ଉପର ହାଣ୍ଡି କାଢ଼ିବେ କଅଣ, ଆଗ କରି ତଳ ହାଣ୍ଡିଟିଏ କାଢ଼ି ବସିଲେ । ତଳ ହାଣ୍ଡିକି କାଢ଼ିଲରୁ ଉପର ହାଣ୍ଡି ଯାକ ସବୁ ଧୁଡ଼ଧାଡ଼ ଅଜାଡ଼ି ହୋଇ ତଳେ ପଡ଼ିଲା । ରଜା ସିନା ଲୁଚି ଲୁଚି ଚୋରି କରିବେ ବୋଲି ଯାଇଛନ୍ତି । ହାଣ୍ଡି ଯାକ ଦୁଲ୍‌ଦାଲ୍ ତଳେ ପଡ଼ିଲରୁ କୁମ୍ଭାର ଘରେ ଶୋଇଥିଲା, ଶାଳରେ ଚୋର ପଶିଲାଣି ବୋଲି ଉଠିଲା । ଆସି ଶାଳରେ ପହଞ୍ଚିଲା ବେଳକୁ ଦେଖିଲା ଜଣେ ମଣିଷ ଖୁଡ଼ଖାଡ଼ ହଉଛି । ଅନ୍ଧାର ରାତିରେ ରଜା ଫଳା କିଏ କାହାକୁ ଚିହ୍ନୁଛି ? ଚୋର ପଶିଛି ବୋଲି ହୁଲିରି କରିରୁ ସାଇପଡ଼ିଶା ଆସି ଜମା ହୋଇଗଲେ । ରଜା ଏବେ ସରମରେ ଚିହ୍ନା ଦଉଛନ୍ତି କିମିତି ? ସମସ୍ତେ ମିଶି ରଜାଙ୍କୁ ନିସ୍ତୁକ ଠାଙ୍କେ ଛେଚିଲେ । ରଜାଙ୍କ ସୁକୁମାର ଦେହରେ କି ମାଡ଼ ସହେ ? ରଜା ମାଡ଼ ଖାଇ ଅଧାନ୍ତ ହେଲରୁ ପଛକୁ ଆଉ କରିବେ କଅଣ, ଚିହ୍ନା ଦେଲେ ।

ଥଳୁଅ ଲଗେଇ ଅଣି ସମସ୍ତେ ଦେଖିଲା ବେଳକୁ ସତକୁ ସତ ରଜା ! ସ୍ୱା ଦେଖି ସମସ୍ତଙ୍କ ହଲକ ଶୁଖିଲା । ବେକରେ ପାଳଦାଉଡ଼ି ପକେଇ ଧାଡ଼ି ଧାଡ଼ି ରଜାଙ୍କ ଗୋଡ଼ତଳେ ପଡିଲେ । ରଜା କହିଲେ, 'ଯାହା ତ ହବାର ହେଲାଣି, ଏ କଥା ଆଉ ପ୍ରଘଟ କରିବ ନାହିଁ । ଯେବେ ପ୍ରଘଟ କରିବ, ତେବେ ସମସ୍ତଙ୍କୁ ସର୍ବଂଶେ ମୁଣ୍ଡକାଟ କରିବା ।' ସେଥିରୁ ଯେଝା ଘରକୁ ସେ ଗଲେ, ରଜା ଅପଣା ନଅରକୁ ଅଇଲେ । ସେ ଦିନ ରାତିରେ ଶୋଇଲେ । ତହିଁ ଆରଦିନ ସକାଳୁ ଉଠି ମନକଥା ମନରେ ଥାଏ । ମନ୍ତ୍ରୀ ଯିମିତ ସଭାକୁ ଅଇଲେ, ସିମିତ ରଜା ହୁକୁମ ଦେଲେ 'ମନ୍ତ୍ରୀଙ୍କି ସର୍ବଂଶେ ନେଇ ଶୂଳି ଦିଅ । ମନ୍ତ୍ରିର ରକତ ମୁଁ ଚାଟା ଦେନଲେ ମନୋହୁକ ଯିବ ।' କାଲି ରାତି କଥା ତ 'ନାଥେ ଜାଣନ୍ତି କି ହାତେ ଜାଣନ୍ତି ।' ସମସ୍ତେ ଭୁଟଭାଟ ହେଲାରୁ ମନ୍ତ୍ରୀ କାଲି ରାତି କଥା ଜାଣି ପାରିଲେ । ରଜାଙ୍କ ହୁକୁମ ନ ମାନିବ କିଏ ? ମନ୍ତ୍ରିଙ୍କି ଘେନି କୋଟୁଆଳପୁଅ ଶୂଳିଆ ପଦାକୁ ଗଲା । ଏଣେ ହୋଇଥାଏ କଅଣ, ନା ମନ୍ତ୍ରିଙ୍କର ସଭା ସାନ ବୋହୂଙ୍କ ମାସ ଗଡ଼ିଥାଏ । ମନ୍ତ୍ରୀ କୋଟୁଆଳପୁଅ ସଙ୍ଗେ ଧରମପୁଅ ବସିଲେ, କହିଲେ, 'ସମସ୍ତଙ୍କୁ ପଛେ ଶୂଳି ଦିଅ, ସାନ ବୋହୂଟିକି ଶୂଳି ଦିଅ ନା, ସ୍ତିରୀହତ୍ୟା ବାଳହତ୍ୟା ଲାଗିବ ।' ସାନ ବୋହୂ ସ୍ୱା ଶୁଣି କହିଲା, 'ଯେବେ ସମସ୍ତଙ୍କୁ ରଖିବ, ତେବେ ମତେ ରଖ । ନଇଲେ ମୁଁ ଏକା ଥାଇ କୋଉଁ ପାଣି ଦେବ ? ମତେ ଆଗ କରି ଶୂଳି ଦିଅ ଯେ ମୁଁ ଢନା ପାଞ୍ଜିରୁ ଯାଏଁ ।' କୋଟୁଆଳପୁଅ ଶତରେ ଦୟା ହେଲା । ମନ୍ତ୍ରିଙ୍କି କହିଲା, 'ତୁମେ ସମସ୍ତଙ୍କୁ ଘେନି ଆଜ ରାତି ଏ ମୁଲକରୁ ପଳାଅ ।' ମନ୍ତ୍ରୀ ଏ କଥାରେ ମଙ୍ଗିଲେ । କୋଟୁଆଳପୁଅ ଏକ ଛେଳି ମାରି ରଜାଙ୍କୁ ନେଇ ରକତ ଦେଲା, ରଜା ଚାଟା କଲାରୁ ଠାଅରେ ବସିଲେ । ଏଣେ ମନ୍ତ୍ରୀ ସେ ଦିନଯାକ କୋଟୁଆଳପୁଅ ଘରେ ଲୁଚି ରହିଲେ,

ସତ ହେଲରୁ ପୁଅ ମାଇପ ସମସ୍ତଙ୍କୁ ଘିନି ଯାହା ଯିମିତ ଠଙ୍କା
ଟୋକର ଥିଲ, ରୁଣ୍ଡେଇ ମୁଣ୍ଡେଇ ସେ ସହରରୁ ପଳେଇ ଗଲେ ।
ଯାଇଁ ପହଞ୍ଚିଲେ ଆଉ ଏକ ରଜା ମୁଲକରେ । ସେ ସହରରେ
ଘର ଦୁଆର କରି ରହିଲେ । ଦଶମାସ ଦଶ ଦିନ ଗଲାରୁ ସାନ
ବୋହୂର ଗୋଟିଏ ଉତ୍ତମ ସୁନ୍ଦର ପୁଅ ଜନମ ହେଲା । ପୁଅଟିର
ହେତୁ ପାଇଲାରୁ ତାକୁ ନେଇ ଗୃହାଳରେ ଛାଡ଼ିଲେ । ଟୋକା ଗୁରୁ
ପାଠ ପଢ଼ି ଭାରି ଗୁଣବନ୍ତ ହେଲା । ଦିନେ ଟୋକା ସାଙ୍ଗ ପିଲାଙ୍କ
ସାଙ୍ଗରେ ଖେଳୁଥାଏ । ଖେଳୁ ଖେଳୁ ତା ସାଙ୍ଗମାନଙ୍କ ସାଙ୍ଗରେ ତାର
କଳି ହେଲା । ପିଲାଏ କହିଲେ, 'ତୁ ଗୋଟାଏ 'ବାହୁଁ ଅଇଲା', ତୋ
ସାଙ୍ଗରେ ଅମେ ଖେଳିବୁ ନାହିଁ ।' ଟୋକା ଏ କଥା ଶୁଣି ଆଉ
କାହାକୁ କିଛି ପାଟି ଫିଟେଇଲା ନାହିଁ । ଘରକୁ ଅଇଲାରୁ ଗୋଟାଏ
ଘରେ 'ମଣାମାଟି ରଣଭଣ, ବାଲେଇଗୁହ ସଣସଣି'. ସେହି ଘରେ
କବାଟ କିଳି ଶୋଇଲା, ଯେ ଯେତେ ଡାକିଲେ ଆଉ ନ ଶୁଣେ ।
ପଛକୁ ରଜା ଅସି କେତେ ନେହୁରା ହେଇ କବାଟରେ ମାଇଲେ ।
ମନ୍ତ୍ରିଙ୍କି କହିଲା, 'ସତ୍ୟ କର ।' ମନ୍ତ୍ରୀ ସତ୍ୟ କଲେ । କବାଟ ଫିଟେଇଲାରୁ
ଟୋକା କହିଲା, 'ମତେ ଅଜ ମୋ ସାଙ୍ଗଗୁଡ଼ 'ବାହୁଁ ଅଇଲା' ବୋଲି
ତାହିଁକି କହିଲେ, ଏଥିର କଥା ନ କହିଲେ ମୁଁ ଖାଇବି ନାହିଁ ।'
ମନ୍ତ୍ରୀ କହିଲେ, 'ଏଇ କଥା ତ, ଏଥିପାଇଁ କିଆଁ ଏତେ ଅଭିମାନ?
ତୁ ଗାଧୋଇ ପାଧୋଇ ଖା ପି, ମୁଁ ତତେ ଏ କଥା କହିବି ।'
ଟୋକା ଖାଇ ପିଇ ସାରି ଅସି ପହଞ୍ଚିଲା ରଜା ପାଖରେ । ରଜା
ସେହିକ୍ଷଣି ସବୁ ଆଗ କଥାଯାକ କହିଗଲେ । ଯିମିତ ରଜା
ପଚାରିଲେ, ମନ୍ତ୍ରୀ କହିଲେ—'ନେଇ ଅଣି ଥୋଇ ଜାଣିଲେ ଚୋର
ବିଦ୍ୟା ଭଲ' ରଜା ହୁକୁମ ଦେଲେ ସବଂଶେ ଶୂଳି ଦବାକୁ,
କୋଟୁଆଳପୁଅ ସାଙ୍ଗେ ଧରମପୁଅ ବସି ମନ୍ତ୍ରୀ ଯିମିତ ବର୍ତ୍ତି କର ଏ

ମୁଲକକୁ ପଳେଇ ଅସିଲେ, ସବୁ କଥାଯାକ ଅଗରୁ ମୂଳଯାଏ ଟୋକା ଅଗରେ କହିଗଲେ । ଟୋକା ଏ କଥାଯାକ ଶୁଣି ସାରିକି, କହିଲା, 'ମୁଁ ସେ ରଜା ରାଇଜକୁ ଯିବି ।' ମା ବାପ ଅଜା ଯେ ଯେତେ ବୁଝାଇଲେ ଅଉ ନ ବୁଝିଲା । ପଛକୁ କିଛି ଟଙ୍କା ଟୋକର ଧରି ବାହାରିଲା, ଯାଇ ପହଞ୍ଚିଲା ସେ ରଜା ମୁଲକରେ । ରଜାଙ୍କ ଘର ମାଲୁଣୀ ଘରେ ଯାଇ ପହଞ୍ଚିଲା, ତାକୁ ଟଙ୍କା ସୁନା କରି ଅଞ୍ଜୁଳାଏ ଦେଲା, ତା ସାଙ୍ଗରେ ଧରମପୁଅ ବସିଲା, ତା ଘରେ ରହିଲା । ମାଲୁଣୀକି ନିୟମ କରେଇଲା, 'ମୁ ତୋ ଘରେ ଅଛି, ଏ କଥା କାହା ଅଗରେ ଫିଟେଇବୁ ନାହିଁ, ମୁଁ ତତେ ଗଦା ଗଦା ଅସରଫି, ଟଙ୍କା ଅଣି ଦେବି ।' ଏଠେଇଁ ସେଠେଇଁ ବୁଲି ଚାଲି ସେଠାରେ ସବୁ ହାଲ ଚାଲ ସନ୍ଧେ ସନ୍ଧେ ଜାଣୁଥାଏ । ଏଣେ ମାଲୁଣୀ ତ ନିତି ଫୁଲମାଳ ଘେନି ନଅରକୁ ଯିବା ଅସିବା କରେ । ଟୋକା ମାଲୁଣୀକି କହୁଥାଏ, 'ନଅରର ସବୁ ଖବର ଅଣି ନିତି ନିତି ମୋ ଅଗରେ କହିବୁ ।' ମାଲୁଣୀ ନଅରର ସବୁ ହାଲଚାଲ ଅଣି ତାକୁ ନିତି କହେ । ରାତି ହେଲରୁ ଏ ଟୋକା ବାହାରେ ଚୋରି କରି । ସେ ଦେଶର ସାଧବଘର ପୁଅ ଯାଇଥାଏ ବିଦେଶକୁ ବେପାର ବଣିଜ କରି; ତା ପାଖରୁ ସାତ ବରଷ ହେଲା କିଛି ଭରସା ଅସିବାକୁ ନାହିଁ । ସାଧବଘରେ ସମସ୍ତେ ଭାରି ଚିନ୍ତାରେ ଥାଆନ୍ତି । ଦିନେ ସନ୍ଧ୍ୟା ବୁଡ଼ି ଯାଇଛି, ଏ ଟୋକା ଗୋଟାଏ ବାକସରେ ବାକସେ ଟଙ୍କା ସୁନା ଭର୍ତ୍ତି କରି ଯାଇ ସାଧବଘରେ ପହଞ୍ଚିଲା । ପୁଅ ଏତେ ଦିନେ ଅଇଲା ବୋଲି ସାଧବଘରେ ସମସ୍ତେ ଭାରି ଅନନ୍ଦ ହେଲେ । ଏ ଟୋକା କହିଲା, 'ବିଦେଶରେ ମୋ ଦିହ ଦୁଃଖ ହେଲା ଯେ ଅଖିକି କିଛି ଦିଶିଲା ନାହିଁ; ଅଖି ଫୁଟିଗଲା । ମୋର ଅଉ ବଞ୍ଚିବାର ଅଶା ନ ଥାଏ । ଜଣେ ବାବାଜୀ ଅସି ଔଷଧ ଦେଲାରୁ ମୋ ପ୍ରାଣ ରହିଲା;

ନଇଲେ ତୁମେ କି ମତେ ଅନ୍ଧ ଦେଖିଥାନ୍ତ ? ମୋ ଦେହ ଦୁଃଖ ହେଲାରୁ ମୁଁ ଘରକୁ ଭୂଷା ଫାଷା କରୁ ଦେଇ ପାରିଲି ନାହିଁ । ଦେହ ଟିକିଏ ଉଶ୍ବାସ ହେଲାରୁ ବାହାରି ଅଇଲି ।' ଯୁଆ କହି କାନ୍ଦିଲା, ଘରେ ସମସ୍ତେ କାନ୍ଦିଲେ, ରହିଲେ । ଟୋକା କହିଲା, 'ମୋ ଅଖି ଅଲ-ଯାଏ ଅପୁ ହୋଇ ଭଲ ହେଉ ନାହିଁ । ବାବାଜୀ କହିଛନ୍ତି, 'ତୋ ଅଖି ଭଲ ନ ହବାଯାଏ ରାତିରେ ତୁ ଦୀପ ଆଲୁଅରେ ବସିବୁ ନାହିଁ । ଦୀପ ଆଲୁଅ ଅଖିରେ ପଡ଼ିଲେ ଅଖି ଫୁଟିଯିବ ।' ସେଥିରୁ ଏ ଟୋକା ଯେଉଁ ଘରେ ରହିଲା, ସେ ଘରକୁ ଅଉ କେହି ଦୀପ ନେଲେ ନାହିଁ; ଏ ଟୋକା ଅନ୍ଧାରରେ ବସିଥାଏ । ସାଧବକୁ ଉଜେଇଲା, ସାଧବ ମନେ ମନେ ଭାରି ଖୁସି ଅପଣା ପୁଅ ବୋଲି । ବହୁତ ରାତିଯାକେ ସାଧବ ଅଉ ଏ ଟୋକା ବସି ଦୁଃଖ ସୁଖ ହେଲେ, ପୁଅ ଗଲାରୁ ସାଧବ ଯାହା ଯିମିତି କମେଇଥିଲା, ଯେଉଁଠି ଯାହା ଟଙ୍କା ଟୋକର ରଖିଛି, ସବୁ ଏ ଟୋକା ଅଗରେ କହିଲା । ପଛକୁ କହିଲା, 'ତୁ ନ ଅସିବାରୁ ମୁଁ ଭାରି ବ୍ୟସ୍ତ ଥିଲି, ଏ ବୁଢ଼ାଦିନେ ମୋର ଏତେ ବୁହାସୁହା କରେ କିଏ ? ତୁ ଅଇଲୁଣି, ଏଥରକି ତୋ ଘର ତୁ ସମ୍ଭାଳ, ମୁଁ ମୁଠାଏ ଖାଇ, ଖଣ୍ଡେ ପିନ୍ଧି ନିଶ୍ଚିନ୍ତ ହୋଇ ବସିବି ।' ଯୁଆ କହି ଏ ଟୋକାକୁ କୁଞ୍ଚିପେଣ୍ଡାକ ପକେଇ ଦେଲା । ସାଧବ ଶୋଇବାକୁ ଗଲା । ବେଶି ରାତି ହେଲାରୁ ସମସ୍ତେ ଶୋଇ ପଡ଼ିଲେ । ନିଶା ଗରଜିଲା ବେଳକୁ ଏ ଟୋକା ଧୀର ହୋଇ ଉଠି ସବୁ ଘରେ ଯାଇ କାନ ପାତିଲା । ସମସ୍ତେ ଅଚେତା ହୋଇ ଘୁଙ୍ଗୁଡ଼ି ମାରି ଶୋଇଲେଣି । ଏ ଟୋକା ଅଗରୁ ସୂକ କରି ମଣିଷ ଦଶ ବାର ଜଣ ଦାଣ୍ଡରେ ରଖେଇଥାଏ । ଘରେ ସମସ୍ତେ ଶୁନଶାନ ହେଲାରୁ ଏ ଟୋକା ଧୀର କରି ଗନ୍ତାଘର କୋଲପ ଫିଟେଇଲା, କୁଞ୍ଚି-ପେଣ୍ଡାକଯାକ ତ ତାଠେଇଁ ଥାଏ, ଟଙ୍କା ସିନ୍ଦୁକ ବାକସ ସବୁ

ଫିଟେଇ ସୁନା, ରୁପା, ଟଙ୍କା ମୋହର ଯେତକ ସାଧବଘରେ ଯାହା ଯେଉଁଠେଇଁ ଥିଲା, ସବୁଯାକ ବୋହି ନେଇ ଦାଣ୍ଡ ପଣିଷଙ୍କୁ ଦେଲା। ସାଧବଘରେ କଳାକନା ବୁଲେଇ ସବୁଯାକ ନେଇ ଭୁନଭାନ ଖସି ସାଧବଘରୁ ବାହାରିଲା। ଧନ ଦରବ ସବୁଯାକ ନେଇ ମାଲୁଣୀ ଜିମା ଦେଲା। ସକାଳୁ ଉଠି ସାଧବ ଦେଖିଲାବେଳକୁ ପୁଅ ଝିଅ କେହି ନାହିଁ; ସିନ୍ଦୁକ ବାକସ ସବୁ ମେଲା ହୋଇ ପଡ଼ିଛି। ଟଙ୍କା ପୋତିକର ସବୁ ଝାଡ଼ଝୁଡ଼ୁ। ସେଥିରୁ ଲାଗିଲା ଖୋଜା, ମୁଲକଯାକ ହୁରି ପଡ଼ିଗଲା। ରଜାଙ୍କ ଏ କଥା ଏତିକି ହେଲା, ଏ କଥାର ଅଜ କିଛି ଠିକଣା ମିଳିଲା ନାହିଁ। ଇମିତି ଅଜ ଯା ଘରୁ, କାଲି ତା ଘରୁ ଚୋରି ହେଲା। ରଜା ନିତି ଶୁଣନ୍ତି। ଏଣେ ନଅରରେ ଯାହା ବିଚାର ହୁଏ, ମାଲୁଣୀ ସବୁ ଶୁଣି କରି ଯାଇ ପୋକାକୁ କହେ। ପୋକା ସେଥିକି ଭାବିଚିନ୍ତି ଥାଏ। ରାଇଜଯାକ ଡେଙ୍ଗୁରା ଦିଆଗଲା, 'ଯେ ଏ ଚୋରକୁ ଧରି ଦବ, ସେ ଶହେ ଟଙ୍କା ପାଇବ।' ଯେ ଯେତେ ସୂତ୍ର କଲେ, ଚୋରର କିଛି ଥିଅ ମିଳିଲା ନାହିଁ। ଅଜ ଏ କହେ ମୋ ଘରୁ ଚୋରି ହେଲା, କାଲି ସେ କହେ ତା ଘରୁ ଚୋରି ହେଲା। ଯେ ଚୋର ଧରିବାକୁ ରାତିରେ ପହରା ଦେବାକୁ ବାହାରେ, ଏ ପୋକା ତ ସବୁ ବିଚାର ମାଲୁଣୀଠଉଁ ଶୁଣେ, ସେହି ଦିନ ତାରି ଘରୁ ଚୋରି ହୁଏ। ଯେ ଯେତେ ଜାଗାଚିଆର ହେଲେ ଚୋର ଅଜ ଧରା ପଡ଼ିଲା ନାହିଁ। ରଜାଙ୍କ ଗୁରୁଗୋସେଇଁ କହିଲେ ଚୋରକୁ ଧରିବେ ବୋଲି। ଏଣେ ଏ ପୋକା ମାଲୁଣୀଠଉଁ ଗୁରୁଗୋସେଇଁଙ୍କ ଓର ଅଖ ବୁଝିଲା। ନିତି ସନ୍ଧ୍ୟା ବେଳକୁ ଗୁରୁଗୋସେଇଁ ଗୋଟାଏ ପୋଖରୀକି ଯାଆନ୍ତି, ଲୁଗାପଟାତକ ପାଲଟି ପୋଖରୀ ପାହାଚରେ ରଖି ଦିଅନ୍ତି, ଲଙ୍ଗଳା ହୋଇ ବୁଡ଼ଯାଏ ପାଣିରେ ପଶି ଗୋଟାଏ ମନ୍ତ୍ର ସାଧନା କରନ୍ତି। ପୋକା ତ ଏ ସନ୍ଧ ଜାଣିଥାଏ। ସେ ଦିନ ସନ୍ଧ୍ୟାବେଳେ ଗୁରୁ-

ଗୋସେଇଁ ଲୁଗାପଟା ଥୋଇ ଦେଇ ପାଣିରେ ପଶି ଜପ କରୁଛନ୍ତି, ଟୋକା ଖଞ୍ଜିଗାଞ୍ଜିରେ ଲୁଚି ହୋଇ ଗଲା, ପୋଖରୀ ପାହାଚ ଉପରୁ ଗୋସେଇଁଙ୍କ ଲୁଗାପଟାତକ ଘେନି ଛୁ । ଏଣେ କଣ କଲା, କାଖରେ ପାଞ୍ଚଖଣ୍ଡ ଜାକି ଡିବା ଦୋସତା ହୋଇ ଯାଇ ଗୋସେଇଁଙ୍କ ଘରେ ପହଞ୍ଚିଲା ତାହାର ବେଶରେ । ଗୁରୁଗୋସେଇଁଙ୍କ ଭାରିଯା ହାତ ଦେଖି କେତେ କଥା ଫଳେଇ କରି କହିଲାରୁ ତାହାର କଥାରେ ତାଙ୍କର ଭାରି ବିଶ୍ୱାସ ହେଲା । ପଛକୁ ଅଗତ କଥା ପଚାରିଲାରୁ କହିଲା, 'ତୁମକୁ ଆଜ ରାତିରେ ଗୋଟାଏ ଭାରି ବିପତ୍ତି ଅଛି, ଆଜ ରାତି ଦ'ପହର ଗଡ଼ ଗଲାରୁ ତୁମ ବାଡ଼ ଦୁଆରେ ବାଳ ମୁକୁଳା କରି ଲଙ୍ଗଳା ହୋଇ ମଶାଣିଚଣ୍ଡିଅ ଆସି ପହଞ୍ଚି କରି ବାଡ଼ କବାଟରେ ମାରିବ, ଗୋସେଇଁଙ୍କ ପାଟି ଭଳିଆ ପାଟି କରିବ, କହିବ 'ମୁଁ ଗୁରୁଗୋସେଇଁ'; ତାକୁ କବାଟ ଫିଟେଇ ଦେଲେ ସେ ତୁମ ବଂଶଯାକ ପଦା କରିବ । ତୁମେ ଗୋଟିଏ କଥା କରିବ, ଆଜ ତ ଗୋସେଇଁ ଯିବେ ଗ୍ରାମ ଜଗି, ତୁମେ ପାଣି ହାଣ୍ଡିଏ ଚୂଲିରେ ବସେଇ ଥିବ, ସେ ପାଣି ଟକଟକ ହୋଇ ଫୁଟୁଥିବ, ଗୋଟାକେତେ ବୋଲୁଅ ଅଣି ରଖିଥିବ । ଯେମିତ ମଡ଼ାଚଣ୍ଡିଅ ଆସି ତୁନ ତୁନ କରି କବାଟରେ ମାରିବ, ତୁମେ ଫାଟ ବାଟେ ଚାହିଁବ ମୋ କଥସ ତ କି ମିଛ । ତୁମେ ଭୁଷୁକିନା କବାଟ ଫିଟେଇ ଦେଇ ଝୁଟୁମ ପାଣି ହାଣ୍ଡିକ ତା ଉପରକୁ ଫୋପାଡ଼ି ବୋଲୁଅ ଲଦିବ । ଯା ହେଲେ ସେ ପଳେଇଯିବ, ନଇଲେ ବଂଶଯାକ ଖାଇବ ।' ଗୋସେଇଁଙ୍କ ଭାରିଯା ତାହାର କହିବା କଥା କଲେ, ପାଣି ହାଣ୍ଡିକ ନିଆଁ ଉପରେ ଫୁଟୁଥାଏ । ଏଣେ କଅଣ ହେଲା, ଗୁରୁଗୋସେଇଁ ଜପ ସାରି ପାଣିରୁ ଉଠିଲା ବେଳକୁ ଦେଖନ୍ତି, ପାହାଚ ଉପରେ ଲୁଗା ନାହିଁ । ସରମ କଥା, ଲଙ୍ଗଳାଟା ହୋଇ ଯିବେ କେବେ କୁଆଡ଼େ ? ବାଳ

ଠିଦା, ମୁକୁଳା ହେଉଛୁ, ଏଣେ ଫେର ଲଙ୍ଗଳା; କଣ କରିବେ ? ଲୁଚ ଲୁଗଡା ବାଡ଼ବାଟେ ପଶି ଆପଣା ଘର ବାଡ଼ ଦୁଆରେ ଯାଇଁ ପହଞ୍ଚିଲେ । କବାଟରେ ଧୀରେ କରି ମାଇଲେ । ଗୋସେଇଁଙ୍କ ଘରଯା କବାଟ ଜଳା ବାଟେ ଚୁହିଁଲା ବେଳକୁ ସବୁକୁ ସବୁ ନାହାକ ଯାହା କହୁ ଯାଇଥିଲା, ସେହିଠା । ଘରଯା ଭୁସ୍‌କିନା କବାଟ ଫିଟେଇ ଦେଇ ଫୁଟିଲା ପାଣିହାଣ୍ଡି କ ଗୋସେଇଁଙ୍କ ଉପରେ ଅଜାଡ଼ି ପକେଇ କରି ବୋଲୁଅ ଉପରେ ବୋଲୁଅ ଲଦ ପକେଇଲା । ଗୋସେଇଁ ତ ଏକାଥାନକେ ମୋହ ଗଲେ । ଦୀପ ଲଗେଇ ଦେଖିଲା ବେଳକୁ ପିଲେଇ ଚମକି ଗଲା, ଦେଖିଲା ବେଳକୁ ନିଜେ ଗୋସେଇଁଙ୍କର ଏ ଅବସ୍ଥା ! ଦହଯାଇ କଅଁଳିଆ କଦଳିପଡର ଭଳି ସିଝି ଗୋଟାଏ ଛାଲ ଉତୁରି ଗଲାଣି । ଏଣେ ଫେର ତା ଉପରେ ବୋଲୁଅ ଟେକା ମାଡ, ଦହଯାଇ ଅବୁ ଅବୁ ହେଇ ଗର ପର ଅଷ୍ଟାଙ୍ଗ ଶରୀର ଫୁଲି ଗଲାଣି । ଘରେ କାନ୍ଦବୋବାଳି ପଡ଼ିଗଲା । ଗୋସେଇଙ୍କ କାନ ନାକ ଫୁଙ୍କି ପାଣି ଚୋବେଇ ଗୋସେଇଁଙ୍କି ସାଷ୍ଟମ କଲେ, ଘରକୁ ଘେନିଗଲେ । ଗୋସେଇଁଙ୍କ ଚେତା ହେଲାରୁ ଗୋସେଇଁ ସବୁ କଥା କହିଲେ । ସମସ୍ତେ ଜାଣିଲେ, ଏ ସବୁ ସେ ଚୋରର ଫନ୍ଦି । ତହିଁ ଆରଦିନ ସକାଳୁ ରଜା ଉଠି ଚୋରକୁ ଦେଖିବେ କଅଣ, ଦେଖିଲା ବେଳକୁ ଗୁରୁଗୋସେଇଁଙ୍କର ଏ ଅବସ୍ଥା । ଦିନକୁ ଦିନ କଥା ତ ଭାରି ବିଷମ ହେଲା । ଏ ଚୋର ତ ଆଉ ଏଣିକି ମୁଣ୍ଡକ ଅସୁ କରି ଦବ ନାହିଁ ! କରିବା କଅଣ ଏବେ ? ରଜାଙ୍କୁ ଭାରି ଭାଳେଣି ପଡ଼ିଲା । ପଛକୁ ରଜା ହୁକୁମ ଦେଲେ, 'ଅଜି ମନ୍ତ୍ରୀ ଧରିବେ ଚୋର ।' ମନ୍ତ୍ରୀ କଅଣ କରିଥାନ୍ତି, ଏକ ହରକାଠ ଡଅର କଲେ, ସୁଡଯାକ ନଅର ଚୁରପାଖ ଠିଅ ପହରା ଦେଇଥାନ୍ତି । ଏ ଟୋକା ମାଲୁଣୀକି ଦିନରୁ ସହୁଡ଼ା କରିଥାଏ, ମାଲୁଣୀ ନଅରକୁ ଗଲାବେଳେ ନଅର

କାଉଡ଼ୁଅର ଚଳିବାଟ ଶିକୁଳିଟିକି ମେଲି କରି ବଣି ଆସିଥାଏ । ଏ ଟୋକା ସେହିବାଟେ ନଅରରେ ପଶିଲା । ଦେହରେ ସୁନା ରୂପା ଅଳଙ୍କାର ଭରିଲା, ଖଣ୍ଡେ ପାଟଶାଢ଼ୀ ପିନ୍ଧି ସ୍ତ୍ରୀ ବେଶ ହେଲା, ଚାଳଟିଏ ଧରି ନଅର ଦାଣ୍ଡ କବାଟ ଫିଟେଇ ବାହାରିଲାବେଳକୁ ମନ୍ତ୍ରୀ ତ ପଦାରେ ବୁଲୁଥିଲେ, କହିଲେ, 'ତୁମେ ଏତେ ରାତିରେ କିଏ ?' ଟୋକା ତ ସ୍ତ୍ରୀ ବେଶ ଧରିଛି, କହିଲା, 'ମୁଁ ଜେମାଦେଈ । ଭିତର ପୋଖରୀପାଣି ମାଡ଼ିଲାରୁ ତର ସହିଲା ନାହିଁ, ପୋଇଲୀ ପଠବାସ୍ କାହାକୁ ନ ଉଠେଇ ବାହାରି ଆଇଲି, ମତେ ଡର ମାଡ଼ୁଛି, ଟିକିଏ ଠିଆ ହୁଅନ୍ତୁ, ମୁଁ ବାହୁଡ଼ିକି ବସନ୍ତୁ । ମତେ ନଅରକୁ ଛାଡ଼ି ଦେଇ ତୁମେ ତୁମ ପହରାରେ ରହିବ ।" ମନ୍ତ୍ରୀ ଗଲେ ସାଙ୍ଗରେ ଜଗିବାକୁ । ଏ ଟୋକା ଖଣ୍ଡେ ଦୂର ଯାଇ ମିଛରେ ଗୋଟାଏ ବୁଢ଼ା ପାଖରେ ବସିଗଲା, ପାଣି ସାରି ଉଠି ଆଇଲା । ମନ୍ତ୍ରୀଙ୍କୁ ପଚାରିଲା, 'ତୁମେ କିଆଁ ଏତେ ରାତିରେ ଏଠେଇଁ ପହରା ଦେଉଛ ?' ମନ୍ତ୍ରୀ କହିଲେ, 'ଚୋର ଧରିବି ବୋଲି ପହରା ଦେଉଛୁ । ଚୋରକୁ ଧରିଲେ ଏ ହରିକାଠରେ ପକେଇବି, କାଲି ସକାଳୁ ରଜାଙ୍କ ଛାମୁରେ ପହଞ୍ଚେଇବି ।' ଜେମା କହିଲେ, 'ଏ ହରିକାଠରେ ଚୋର କିମିତି ପଡ଼ିବ ?' ମନ୍ତ୍ରୀ କହିଲେ, 'ତା ଗୋଡ଼ ହାତ ଏଥିରେ ଭରତି କରି ଖିଲ୍ ବାଡ଼େଇ ଦେଲେ ରହିବ ।' ଜେମା କହିଲେ, 'ମୁଁ ଗୋଡ଼ ହାତ ଏଥିରେ ଦଉଛି, କିମିତି ଖିଲ୍ ବାଡ଼ଅନ୍ତି, ଟିକିଏ ବାଡ଼େଇ ଦିଅ, ମୁଁ ଦେଖେଁ ।' ମନ୍ତ୍ରୀ ଜିଭ କାମୁଡ଼ି ପକେଇ କହିଲେ, 'ତୁମେ ରଜାଙ୍କ ଜେମାଦେଈ, ମୁଁ ତୁମ ଗୋଡ଼ହାତ ପୁରେଇ ଖିଲ୍ ମାରି ଦେବି ! ରଜା ଶୁଣିଲେ ଆଉ ମୋ ମୁଣ୍ଡ ରଖିବେ ? ଯେବେ ଦେଖିବାକୁ ମନ ହଉଛି, ତେବେ ମୁଁ ଏ ହରିକାଠରେ ଗୋଡ଼ ହାତ ଭରତି କରୁଛି, ତୁମେ ଖିଲ୍ ବାଡ଼େଇ ଦିଅ, କିମିତି ହରି-

ଖାଟରେ ଚୋର ପଡ଼ନ୍ତି, ଦେଖି ପାରିଲେ ଖିଲ ଫୁଟାଇ ଦିବ, ମୁଁ ବାହାରି ଆସିବି ।' ଯୁଆ କହୁ ମନ୍ତ୍ରୀ ଯିମିତି ହରିଖାଟରେ ଗୋଡ଼ ହାତ ପୂରେଇଲେ, ଜେମାଦେଈ ସେ ବଣାରେ ଖିଲାଟିମାନ ଦେଇ ଅଚ୍ଛା କରି ଧ' ଧ' ପାହାର ବାଡ଼େଇ ଦେଲେ । ବାଡ଼େଇ ଦେଇ ଦାଣ୍ଡେ ଦାଣ୍ଡେ ଚୁ । ମନ୍ତ୍ରୀ ପଡ଼ିଛନ୍ତି ! ସକାଳୁ ଉଠି ସମସ୍ତେ ଦେଖିଲେ ବେଳକୁ ମନ୍ତ୍ରୀ ନିଜେ ପଡ଼ିଛନ୍ତି ହରିଖାଟରେ । କୁହଁ କୁହଁ ସ୍ୱରରେ ଜେମା ଉଠି ନାହାନ୍ତି ପୋଖରୀପାଣି । ମନ୍ତ୍ରୀ ଆଉ ସରମରେ ମୁହଁ ଟେକି ପାରିଲେ ନାହିଁ । ଚୋରର ଫେର ଏଡ଼େ ସାହସ ! ନଅର ଭିତରେ ପଶି ଏତେ ହୁନର ! ନିଜେ ମନ୍ତ୍ରୀ ତ ସମ୍ଭାଳି ପଡ଼ିଲେ ନାହିଁ, କଅଣ ହବ ? ଏଥିକି ବାହାର କିଛୁ ବୁଦ୍ଧି ସ୍ଫୁରିଲା ନାହିଁ । ତହିଁ ଆର ଦିନ ରଜା କହିଲେ, 'ଅଚ୍ଛା, ଅଜ ରାତିରେ ଆମେ ନିଜେ ଚୋର ଧରିବା ।' ଏ ଟୋକା ମାଲୁଣୀଠଁ ଏ କଥାର ସୋରସାର ବୁଝିଲା । ନିଶବଦ ରାତି ହେଲାରୁ ରଜା ଗୁର ହତିଆର ବାନ୍ଧି ଘୋଡ଼ାରେ ସୁଆର ହେଇ ବାହାରିଲେ ଚୋରକୁ ଧରିବେ ବୋଲି । ଏ ଟୋକା କଅଣ କରିଥାଏ—ଖଣ୍ଡେ ଶାଗ ଦରିବା ପିନ୍ଧି ଏକ ତଳକି ବାଟରେ ବସି ଗୋଟାଏ ଚକି ପକେଇ ମାଣ୍ଡିଆ ପେଷୁଥାଏ, ନିଙ୍ଗି ବିସ୍ୱରରେ ଗୁଣୁଗୁଣୁ ହେଇ ରାତି ଅନିଦ୍ରା ହେଲା ଭଳିଆ ଗୀତ ବୋଲୁଥାଏ । ରଜା ଘୋଡ଼ାରେ ଚଢ଼ି ଆସି ପହଞ୍ଚିଲେ ସେଠେଇଁ । ରଜା କହିଲେ, 'ତୁ ଏତେ ରାତିରେ ଏଠେଇଁ କିଏ ଲୋ ?' ବୁଢ଼ୀ କହିଲା, 'ପୁତ, ତୁ ଏତେ ରାତିରେ ଏଠେଇଁକି କାହିଁ ଆଇଲୁ ? ଏଠେଇଁତ ଭାରି ଚୋର ମାତିଛନ୍ତି । ଦଣ୍ଡକ ତଳେ ଏ ବାଟେ ଅଠଟା କି ଦଶଟା ଘୋଡ଼ାରେ ଚଢ଼ି ପଞ୍ଚାଏ ମରଦ ଗୁର ହତିଆର ବାନ୍ଧିକରି ନଅର ଆଡ଼କୁ ଗଲେ । କହିଲେ 'ଆମେ ଯାଉଛୁଁ ନଅରରେ ଚୋର କରିବୁଁ ବୋଲି ।' ମୁଁ ଅଣୁ ବୁଢ଼ୀ

ଖଣ୍ଡାଟିଏ, ମୋର କେହି ନାହିଁ, ମାଣ୍ଡିଆ ପେଷି ବଞ୍ଚଲେ ମୋ ପେଟ ପୋଷେ । ସେ ସବୁ ମୋଠାରୁଁ ପୋଷେ ଲେଖାଏଁ ଛତୁଆ ଖାଇ ମୁନ୍ଦାଏ ଲେଖାଏଁ ପାଣି ପିଇ କର ଗଲେ, କହିଲେ, 'ତୁ ଏଠେଇଁ ବସିଥା, ଆମେ ଏଇ ବାଟେ ଫେର ଅଇଲାବେଳେ ତତେ ଦରଦର ଛୋଡ଼ କର ଦେଇଯିବୁଁ ।' ମୁଁ ଏଠେଇଁ ବସି ଚକ ପେଷୁଛୁ ।' ରେଜା କହିଲେ,'ଅଚ୍ଛା ଭଲ, ସେ ଚୋରଯା କେମିତ ଧରା ପଡ଼ିବେ ? ସେ ଚୋରଙ୍କୁ ଯେବେ ଧରେଇ ଦବୁ, ତେବେ ତତେ ଘର ଦୁଆର ତୋଳେଇ ଦେବା, ବହୁତ ଟଙ୍କା ସୁନା ଦେବା । ତୁ ଆଉ ଦୁଃଖ ପାଇବୁ ନାହିଁ ।' ଖଣ୍ଡୀ କହିଲା, 'ତେବେ ତୁମେ ଗୋଟିଏ କଥା କର । ମୋ ଶରବଜନା ପିନ୍ଧି ଏଠେଇଁ ବସି ଚକ ପେଷୁଥାଅ । ସେ ଚୋର ଏଇ ବାଟେ ଆସିଲେ ଧରବ । ମତେ ତୁମ ପାଗପାଟୁକା ଦିଅ, ମୁଁ ପିନ୍ଧି ଘୋଡ଼ାରେ ଚଢ଼ି ସେ ଚୋରଙ୍କ ପଛେ ପଛେ ଓଉ ଜଣ୍ଡି ଯାଏଁ, ତାଙ୍କୁ ଏଇ ବାଟେ ଫେରେଇ ଆଣିବା ।' ରଜା କହିଲେ, 'ହଉ ।' ରଜା ଶରୀ ଦରବା ପିନ୍ଧି ମାଣ୍ଡିଆ ପେଷି ବସିଲେ । ଟୋକା ରଜାଙ୍କ ପାଗପାଟୁକା ପିନ୍ଧି ଗୁର ହାତଆର ବାନ୍ଧିଲା, ଘୋଡ଼ାରେ ଚଢ଼ିଲା । ଘୋଡ଼ା ଚଢ଼ି ନଅର ଆଡ଼କୁ ଗଲା, ଯାଇ ସିଂହଦୁଆରେ ପହଞ୍ଚିଲା । ଜଗୁଆଲିଯାକ ବାହୁରଲେ ରଜା ଅଇଲେ ବୋଲି । ଜଗୁଆଳିଙ୍କି କହିଗଲା, 'ଘଡ଼ି ଜାଙ୍ଗୁଲ୍ କାଙ୍ଗୁଲ୍ ହଉଥିବ, ସିଂହ ଦୁଆରେ ଆସି ଗୋଟାଏ ବୁଢ଼ୀ ପହଞ୍ଚିବ, ସେ ଯେ ଅସଲ୍ ଚୋର । ସେ ଯାହା କହିବ, ତମେ କିଛି ଶୁଣିବ ନାହିଁ, ତାକୁ ଧରି ବାନ୍ଧି ପକେଇବ;ନେଇ ବନ୍ଦଘରେ ପକେଇବ, ଆମ ପହୁଡ଼ ଭାଙ୍ଗଲେ ଆମ ପାଖରେ ନେଇ ତାକୁ ପହଞ୍ଚେଇବ । ଏ କଥା ନ କଲେ ମୁଣ୍ଡକାଟ ହବ ।' ମ୍ଭା କହି ଟୋକା ଘୋଡ଼ାରୁ ଓହ୍ଲେଇ ପଡ଼ି ନଅର ଭିତର ଖଞ୍ଜାକୁ ବାହାରିଗଲା । ଗୋଟାଏ ଘରର କବାଟ କିଳି ପଶିଲା ।

ଏଣେ ଛତକ ବାଟରେ ରଜା ଖଣ୍ଡେ ଶଗଡ଼କନା ପିନ୍ଧି ଚଙ୍କ ଫେଷ୍ଟୁ ଫେଷ୍ଟୁ ଘଡ ପାହୁବାକୁ ଅସି ହେଲଣି, ଗ୍ଡୈର ନା ଫୋର ଦେଖା ନାହିଁ । ରଜାଙ୍କ ମନ ଭାଇ ବଚ୍ଛନ୍ନ ହେଲ । ଏଣେ କୁଅ ଢୋଇଲ ଚୋବେଇଲେଣି, ସୂନ୍ଦଗ୍ ଉଇଁ ଅଇଲଣି । ଯାହା ତ ହବାର ହେଲଣି, ଘଡ ନ ପାହୁଁ ଣୁ ଯାଇ ଭଲ ଉଆସରେ ପହଞ୍ଚିଲେ ଗଙ୍ଗାସ୍ନାହାନ ଫଳ ହବ ! ଯ୍ୟା କଗ୍ଡୈ ଘଡ ଜାଙ୍ଗୁଲ ଜାଙ୍ଗୁଲ ହଉଛି; ଶଗଡ଼କନା ଖଣ୍ଡକ ପିନ୍ଧି ଲୁସୁରୁପୁସୁରୁ ହେଇ ରଜା ଯାଇ ସିଂହଦୁଆରେ ଗ୍ଡୈର ଭଳି ପହଞ୍ଚିଲେ । ଜଗୁଆଳଯାକ ତ ଅଗରୁ ପାଇଛନ୍ତି ହୁକୁମ, ସ୍ୟାଙ୍କୁ ଅନ୍ଧାରରେ ଚିହ୍ନୁଛି କିଏ ? ତାଙ୍କୁ ବାନ୍ଧି ପକେଇ ନେଇ ବନ୍ଦଘରେ ପକେଇଲେ । ରଜା ଯେତେ କହୁଛନ୍ତି, 'ମୁଁ ରଜା', ତାଙ୍କ କଥା ଶୁଣୁଛି କିଏ ? ସମସ୍ତଙ୍କର ତ ଏକ ହପା ଉଠିଛି । ପଛକୁ ରଜାଙ୍କର ପାଟି ବାରଲେ, ଫରଚ୍ଚ ହେଲରୁ ଦେଖିଲେ ଯେ ନିଜେ ରଜା । ରଜା ସେ ଶଗଡ଼କନା ଖଣ୍ଡକ ପାଲଟି ପକେଇଲେ । ଅସଲ ଗ୍ଡୈରକୁ ଲଗିଲ ଖୋଜା । ଟୋକା ଯେଉଁ ଘରେ କବାଟ କିଲ ପଶିଛି, ସେ ଘର କବାଟରେ ଯାଇଁ ସମସ୍ତେ ମାଇଲେ । ଟୋକା ଭିତରେ ଥାଇ କହଲ, 'ରଜା ନିଜେ ଏଠେଇଁକି ବିଜେ କଲେ ମୁଁ କବାଟ ଫିଟେଇବି ।' ସମସ୍ତେ ଯାଇଁ ରଜାଙ୍କୁ ଜଣା କଲରୁ ରଜା ନିଜେ ବିଜେ କଲେ । କବାଟରେ ମାଇଲେ, ଏ ଟୋକା ଭିତରେ ଥାଇ କହଲ, 'ମଣିମା ! ଏ ମୁଣ୍ଡ ରହିବ ବୋଲି ଯେବେ ଯ୍ୟୁମ୍ଭେ ସତ୍ୟ କରିବେ, ତେବେ କବାଟ ଫିଟେଇବି ।' ରଜା ସତ୍ୟ କଲେ, ଏ ଟୋକା କବାଟ ଫିଟେଇ ଦେଇ ଲମ୍ବ ହୋଇ ଗୋଡ଼ତଳେ ପଡ଼ିଗଲ, କହଲ, 'ମଣିମା ! ମୋ ଅଜାଙ୍କୁ ଯ୍ୟୁମ୍ଭେ ପଚ୍ଚୈରଥିଲେ, ମୋ ଅଜା କହିଲେ, 'ନେଇ ଅଣି ଥୋଇ ଜାଣିଲେ ଗ୍ଡୈରବଦ୍ଧ୍ୟା ଭଲ ।' ଯ୍ୟୁମ୍ଭ ଗ୍ଡୈର କଥ ନ ଜାଣିଲ, ମୋ ଅଜାଙ୍କୁ ସର୍ବଶେ ଶୂଳ

ହୁକୁମ ଦେଲ । ଏବେ ଗ୍ଲମୁଙ୍କ ଅବଧାନକୁ ଅସିଲ, କିମିତ ନେଇ ଆଣି ଥୋଇ ଜାଣିଲେ ଗ୍ରୈଢବିଦ୍ୟ ଭଲ ?' ସେଇଥିରୁ ରଜାଙ୍କ ଆଗରେ ସବୁ କଥାଯାକ କହିଗଲା । ରଜା ଏ ଟୋକା ବୁଦ୍ଧିକୁ ଭାରି ପ୍ରଶଂସା କଲେ । ପାତ୍ର ମନ୍ତ୍ରୀ ସମସ୍ତେ ଧନ୍ୟ ଧନ୍ୟ କହିଲେ । ରଜା ତା ମୁଣ୍ଡରେ ମନ୍ତ୍ରୀ ଶିରପା ବନ୍ଧେଇ ଦେଲେ । କେମାଦେଈଙ୍କି ତା ସାଙ୍ଗରେ ବିଭା କରେଇ ଦେଲେ । ତା ଅଜା, ବାପ, ମା' ସମସ୍ତଙ୍କୁ ଅବ.ସାଇଜରୁ ଅଣେଇଲେ । ଝିଅ ଜୋଇଁ ଘେନି ଯୁଗସ୍ୱାଇଜ କଲେ ।

ମୋ କଥାଟି ସରିଲା, ଫୁଲ ଗଛଟି ମଲା ।



# ଚାରି ସଙ୍ଗାତ

ଏକ ରାଇଜରେ ଗୋଟିଏ ରଜା ଥାଏ । ସେ ରଜାପୁଅ, ମନ୍ତ୍ରିପୁଅ
ସାଧବପୁଅ, କୋଟୁଆଳପୁଅ ଚାରିହେଁ ସଙ୍ଗାତ ବସିଥାନ୍ତି । ଚାରିଙ୍କର
ଏକା ବିଚାର । ଚାରିଙ୍କ ଭିତରେ ପାଣି ଗଳେ ନାହିଁ । ଦିନେ ଚାରିହେଁ
ଯାଇ ବିଚାରିଲେ ବିଦେଶ କରିବେ ବୋଲି । ଯେଝା ମାବାପଙ୍କୁ ଯାଇ
ଏକଥା କହିଲେ । ଘରୁ ଟଙ୍କା ଟୋକର କଚ୍ଛ ଧଇଲେ, ଘୋଡ଼ା-
ଶାଳରୁ ପକ୍ଷିରାଜ ଘୋଡ଼ା ବାଛିଲେ, ସମସ୍ତେ ପାଗପଟୁକା ହାତ-
ହତିଆର ବାନ୍ଧି, ସାଙ୍ଗ ହୋଇ ବିଦେଶ କରି ବାହାରିଲେ । ଯାଉଁ
ଯାଉଁ ବାଟରେ ବେଳ ବୁଡ଼ିଲା, ଅଗନାଗ୍ନି ବନସ୍ତ, ଜନ ପ୍ରାଣୀ କେହି
ନାହିଁ, ଭୁଅର ଥଣ୍ଟ ନାହିଁ, କି ଚଢ଼େଇର ବେଣ୍ଟ ନାହିଁ । ଆଗକୁ
ଆଉ ପହଣ୍ଡେ ଗୋଡ଼ ଚଳିଲା ନାହିଁ । କଅଣ କରିବେ, ଗୋଟିଏ
ଅମ୍ବଗଛମୂଳେ ଘୋଡ଼ା ଚାରିଙ୍କି ବାନ୍ଧି ଦେଇ ସେ ଗଛମୂଳେ ରହିଲେ ।
ବନସ୍ତରେ କେହି ଜନ ପ୍ରାଣୀ ନାହିଁ । ସମସ୍ତେ ବିଚାରବିଚାର
ହେଲେ, 'ଆମ ଭିତରୁ ଜଣେ ଜଣେ ପହରେ ଲେଖାଏଁ ଜଗିବା,
ଆଉ ସମସ୍ତେ ଶୋଇବେ ।' ପହିଲି ପହରକ ରଜାପୁଅର ପାଳି
ପଡ଼ିଲା । ରଜାପୁଅ ଚାରି ହତିଆର ବାନ୍ଧି ଚେଇଁ କରି ଜଗିଥାଏ ।
ତିନି ଘଡ଼ି ବିତି ଗଲାଣି, ଏତିକିବେଳକୁ ସେ ଅମ୍ବଗଛ ଡାଳରୁ
ଶୁନ୍ୟ ଶବଦ ହେଲା, 'ଗଛମୂଳେ କିଏ ଶୋଇଛି ଉଠି ଯା, ମୁଁ ଭାଙ୍ଗି
ପଡ଼ିବି ।' ରଜାପୁଅ କହିଲା, 'ତୁ ଯେବେ ଭାଙ୍ଗି ପଡ଼ିବୁ ପଡ଼, ଆମେ
ଉଠିବୁଁ ନାହିଁ ।' ଦଣ୍ଡେ ଗଲାରୁ ସେ ଗଛର ଡାଳଯାକ ଭାରି ବାଢ଼େଇ

କଟୃଡ ହେଲାରୁ ଗୋଟାଏ ଅମ୍ବ ଖସି ପଡ଼ିଲା । ରଜାପୁଅ ସେ ଅମ୍ବଟିକି ଗୋଟେଇ ଆଣିଲା । ଫେର ଶୂନ୍ୟ ଶବଦ ହେଲା, 'ଏ ଅମ୍ବଟିକି ଯେ ଗିଳିଦେବ, ସେ ହସିଲା ବେଳେ କାନ୍ଦିଲା ବେଳେ ତା ପାଟିରୁ ମାଣିକଟିଏ ଝଡ଼ିବ ।' ରଜାପୁଅ ସେ ଅମ୍ବରେ ଚିହ୍ନ ଦେଇ ରଖିଥାଏ । ତା ମନରେ ଭାରି କଉତୁକ ହେଲା । ଆଉ ଆର ପହରକୁ ଆଉ ତିନି ସଙ୍ଗାତଙ୍କ ଭିତରୁ କାହାକୁ ଉଠେଇଲା ନାହିଁ, ଆପେ ଜଗି ବସିଥାଏ । ରାତି ଦ'ପହର ହେଇ ନାହିଁ, ଫେର ଶୂନ୍ୟ ଶବଦ ହେଲା, 'ମୋ ମୂଳେ ଯେ ଶୋଇଛ ଉଠି ଯା, ମୁଁ ଭାଙ୍ଗି ପଡ଼ିବି ।' ରଜାପୁଅ କହିଲା, 'ଭାଙ୍ଗି ପଡ଼ିଲେ ପଡ଼, ଆମେ ଉଠିବୁ ନାହିଁ ।' ଫେର ସିମିତି ପହିଲି ପହରକ ଭଳି ଗଛ ଡାଳଯାକ ଭାରି ବାଡ଼େଇ କଟୃଡ଼ ହେଲାରୁ ଫେର ଅମ୍ବଟିଏ ଝଡ଼ି ପଡ଼ିଲା । ରଜାପୁଅ ସେ ଅମ୍ବଟିକୁ ପାଇ ଚିହ୍ନ ଦେଇ ରଖିଲା । ଫେର ଶୂନ୍ୟ ଶବଦ ହେଲା, 'ଏ ଅମ୍ବଟିକି ଯେ ଖାଇବ, ସେ ରଜା ହବ ।' ରାତି ଦ'ପହର ଗଡ଼ିଗଲାରୁ ଆଉ ତିନି ସଙ୍ଗାତଙ୍କୁ ଉଠେଇଲା ନାହିଁ । ତା ମନ ଲାଗିଥାଏ, ଚେଇଁ ବସିଲା, ଫେର ପହଡ଼େ ଆସି ବିତିଲା । ଫେର ସିମିତି ଅମ୍ବଗଛ ବାଡେଇ କଟୃଡ଼ ହେଲା, ଫେର ଗୋଟିଏ ଅମ୍ବ ଝଡ଼ିଲା । ଶୂନ୍ୟ ଶବଦ ହେଲା 'ଏ ଅମ୍ବଟି ଯେ ଖାଇବ, ସେ ମନ୍ତ୍ରୀ ହବ ।' ରଜାପୁଅ ସେ ଅମ୍ବରେ ଚିହ୍ନ ଦେଇ ରଖିଲା । ତିନି ସଙ୍ଗାତଙ୍କୁ ଉଠେଇଲା ନାହିଁ । ରାତି ଶେଷ ପହରକ ଜଗି ବସିଲା । ରାତି ପାହିବାକୁ ଦଣ୍ଡେ ଖଣ୍ଡେ ଅଛି, ଫେର ଗୋଟିଏ ଅମ୍ବ ଝଡ଼ିଲା, ଗଛରୁ ଶବଦ ହେଲା, 'ଏ ଅମ୍ବଟିକି ଯେ ଖାଇବ, ସେ ବେଢ଼ି ପଡ଼ି ରହିବ ।' ରଜା-ପୁଅ ସେ ଅମ୍ବକୁ ଗୋଟେଇ ଚିହ୍ନ ଦେଇ ରଖିଲା । ଗୃହୁଁ ଗୃହୁଁ କୁଆ କୋଇଲି ବୋବେଇଲେ, କାଲି ଅନ୍ଧାର ଲଗି ଆସିଲା । ଉଠି କରୁ ଦେଖନ୍ତି ଯେ ସକାଳ । ମନ୍ତ୍ରିପୁଅ କହିଲା, 'ସଙ୍ଗାତ ! ଆମକୁ କଅଁ

ଉଠେଇଲ ନାହିଁ ? ଅକାରଣେ ରାତଟାଯାକ ଅନିଦ୍ରା ହେଲି ।’ ରଜାପୁଅ କହିଲେ, ‘କାଲି ରାତରେ ଏ ଗଛରୁ ଇମିତ ଶବଦ ହେଲା, ଗୃହରେଟି ପାଚିଲା ଅମ୍ବ ଝଡ଼ି ପଡ଼ିଲା । ମୁଁ ସେ ଅମ୍ବ ଗୃହରେଟି ଗୋଟେଇ କରି ରଖିଛି । ମୁଁ ତ ସେହି କହୁଁଚୁକ ଦେଖି ଭୋଳ ହୋଇ ଗଲି; ତମକୁ ଉଠେଇବାକୁ ହେଜ ହେଲା ନାହିଁ ।’ ରଜାପୁଅ କାଲି ରାତର ସବୁ କଥା ତନି ସଙ୍ଗାତଙ୍କୁ କହିଲେ । ହେଲେ କଅଣ ହେବ, ଅସଲ କଥା, କେଉଁ ଅମ୍ବକୁ ଖାଇଲେ କଅଣ ହବ, ସେ କଥା କାହାକୁ କହିଲେ ନାହିଁ । ରାତ ପାହିଲାରୁ ଗୃହ ସଙ୍ଗାତ ଗୃହ ଘୋଡ଼ାକୁ ସଜ କରି ଘୋଡ଼ାରେ ଚଢ଼ି ସେଠୁଁ ବାହାରିଲେ । ଖଣ୍ଡେ ଦୂର ଯାଇଛନ୍ତି, କଅଁଳ ଗାଧୁଆ ବେଳ ହେଲାଣି, ବାଟରେ ଗୋଟିଏ ନଈ ପଡ଼ିଲା । ସେ ନଈକୂଳରେ ଘୋଡ଼ା ବାନ୍ଧିଲେ, ଗୃହ ସଙ୍ଗାତଯାକ ଗାଧୁଆପାଧୁଆ କଲେ । ଗାଧୋଇ ସାରି ଜଳଖିଆ କଲା ବେଳକୁ ରଜାପୁଅ ସେ ଗୃହରେଟି ଅମ୍ବ ବାହାର କଲେ । ପହିଲି ପହର ଅମ୍ବଟି ଅପେ ଖାଇଲେ, ଅର ପହର ଅମ୍ବଟିକି ମନ୍ତ୍ରି-ପୁଅକୁ ଦେଲେ, ତହିଁଅର ପହର ଅମ୍ବଟି ସାଧବପୁଅକୁ ଦେଲେ, ଶେଷ ପହର ଅମ୍ବଟି କୋଟୁଆଳପୁଅକୁ ଦେଲେ । ଜଳଖିଆ କରି ସାରି ଘୋଡ଼ାଙ୍କ କଥା ବୁଝିଲେ । ଫେର ଗୃହହେଁ ଘୋଡ଼ା ଚଢ଼ି ବାହାରିଲେ । ଯାଉଁ ଯାଉଁ ଏକ ରଜା ରାଇଜରେ ପହଞ୍ଚିଲେ । ସେଠେଇଁ ଏକ ମାଲୁଣୀ ଘରେ ଯାଇ ବସା କଲେ । ରଜାପୁଅ କେଉଁ ଅମ୍ବଟି ଖାଇଥାଏ, ସେ ଅମ୍ବ କଥା ରଖିବା ଲାଗି ଗୋଟିଏ ଘରକୁ ଯାଇ ହସିଦେଲାରୁ ତା ପାଟିରୁ ହୀରାଟିଏ ଝଡ଼ି ପଡ଼ିଲା । ରଜାପୁଅ ଭାରି ଆନନ୍ଦ ହେଲେ । ରଜାପୁଅ ସେ ହୀରାଟିକି ନେଇ, ମନ୍ତ୍ରିପୁଅ ହାତରେ ଦେଲେ । କହିଲେ, ‘ସଙ୍ଗାତ ! ଯାକୁ ନେଇ ଏଠା ମହାଜନଘରେ ବିକ୍ରି ହାଟବାଟ କରି ଅସ ।’ ମନ୍ତ୍ରିପୁଅ ହୀରାଟିକି

ନେଇ ସେ ଦେଶର ମହାଜନ ପାଖରେ ଯାଇ ପହଞ୍ଚିଲା । ମହାଜନ ସେ ହୀରାଟିର ମୂଲ କଲା, ଟଙ୍କା ଦେଲା । ଟଙ୍କା ଗଣିଲାବେଳକୁ ମନ୍ତ୍ରିପୁଅକୁ ମୂତ ମାଡ଼ିଲା, ସେ ମୂତିବାକୁ ଗଲା । ଏଣେ ହୋଇଥାଏ କଣ, ସେ ରାଇଜର ରଜା ମରିଥାଏ । ସେ ରଜାଟି ଅଣ୍ଟୁକୁଡ଼ା । ପାନ ମନ୍ତ୍ରୀ ରଜାଙ୍କ ପାଟହାତୀ ଉପରେ ସୁନା କଳସ ନେଇ ରାଇଜ-ଯାକ ବୁଲାଉଛନ୍ତି, ହାତୀ ଯାହା ଉପରେ ସୁନା କଳସ ଢାଳିବ, ସେ ରଜା ହେବ । ହାତୀ ଯାଇ ମନ୍ତ୍ରିପୁଅ ଉପରେ ସୁନା କଳସ ଢାଳି ଦେଲା । ପାନ ମନ୍ତ୍ରୀ ତାକୁ ନେଇ ଗାଦିରେ ବସେଇଲେ । ଏଣେ ରଜାପୁଅ ଚାହିଁ ବସିଛି । ଚାହିଁ ବସି ବସି ଆଖିରୁ ପାଣି ମଲାଣି, ମନ୍ତ୍ରିପୁଅ ଆସିବାକୁ ନାହିଁ । ପଛକୁ କଅଣ କଲା, ସାଧବପୁଅ ହାତରେ ଆଉ ଗୋଟିଏ ହୀରା ଦେଇ ମହାଜନ ଦୁଆରକୁ ପଠେଇଲା । ସାଧବପୁଅ ସେ ହୀରାଟିର ବିକି ଟଙ୍କା ଗଣୁଛି, ଦାଣ୍ଡରେ ଚହଳ ଶୁଭିଲା, ଏ ଉଠି ଯାଇ ଦାଣ୍ଡରେ ଠିଆ ହେଲା ବେଳକୁ ରଜାଘର ପାଟହାତୀ ଆସି ତାକୁ ଉଠେଇ ନେଇ ପିଠି ଉପରେ ବସେଇଲା, ଏ ଯାଇ ନୂଆ ରଜାର ମନ୍ତ୍ରୀ ହେଲା । ରଜାପୁଅ ଏଣେ ଚାହିଁ ଚାହିଁ ସାଧବପୁଅ ନ ଆଇଲାରୁ ଆଉ ଗୋଟିଏ ହୀରା ଦେଇ କୋଟୁଆଳପୁଅକୁ ପଠେଇଲା । କୋଟୁଆଳପୁଅ ମହାଜନ ସାଙ୍ଗରେ କଥାଭାଷା ହଉଁ ହଉଁ ପଦେ ଦୁଇ ପଦ କଅଣ କହି ଦେଲା । ମହାଜନ ତାକୁ ବେଢ଼ି ପକାଇ ଗୋଟାଏ ଅନ୍ଧାରି ଘରେ ରଖିଲା । ରଜାପୁଅ ଏ ମାଲୁଣୀ ଘରେ ଥାଏ । ଦିନେ ଦି'ଦିନ ବିତିଗଲା, ଏ ସବୁ କଥା ଶୁଣିଲା । ସେ ଦିନ ରାତିରେ ଅମ୍ବଗଛରୁ ଯାହା ଦୈବ୍ୟ ଶବଦ ଶୁଭୁଥିଲା, ସବୁ ସତ ଫଳିଲା । ତିନି ସଙ୍ଗାତ ଯାକ ଗଲେ, ଏବେ ରଜାପୁଅ ଆପଣା କର୍ମକୁ ଆଦର ରହିଲା । ଇମିତି କେତେ ଦିନ ଗଲା । ରଜାପୁଅ ଦିନେ ତିନି ସଙ୍ଗାତଙ୍କୁ ବାହୁନି କରି କାନ୍ଦୁଛି, ପାଖରୁ କେତେ

ହୀରା ନୀଳା ମୋତି ମାଣିକ୍ୟ ଝଡ଼ୁଛି । ଗୋଟିଏ ମାଇପିଟିଏ ଦେଖିଲା । ସେ ମାଇକିନିଆ ଅସୁରୁଣୀ ବୋଲି ରଜାପୁଅ ତ ଜାଣି ନ ଥାଏ । ରଜାପୁଅ ତା ଆଗରେ ସବୁ କଥା ମୂଳରୁ ଅଗଯାଏ ଫିଟେଇ କରି କହିଗଲା । ଅସୁରୁଣୀ ରଜାପୁଅକୁ ଭାରି ଆଦର କଲା, ଆପଣା ଘରକୁ ଢିନିଗଲା । ରଜାପୁଅ ସାଙ୍ଗରେ ଭାରି ଜାଗର କଲା ତା ଘରେ ଜଳଖିଆ କରିବାକୁ । ରଜାପୁଅ ତ ଏତେ ମାୟା ଜାଣି ନ ଥାଏ, ମଙ୍ଗିଗଲା । ମାଇକିନିଆ ଗୁଡ଼ାଏ ଭୋଗ ତିଆରି କଲା, ସେ ଭୋଗରେ ବିଷ ଦେଇଥାଏ । ରଜାପୁଅ ଭୋଗ ଖାଇ ବାନ୍ତି କଲା । ରଜାପୁଅର ତ ସୁକୁମାର ଜୀବନ, ବାନ୍ତି କରି କରି ଅଜ୍ଞାନ ହୋଇଗଲା । ଅମ୍ବ ଠାକୁଅଟି ପାଟି ବାଟେ ବାହାରି ପଡ଼ିଲା । ଅସୁରୁଣୀ ତାକୁ ଲୁଚେଇ ରଖିଲା । ରଜାପୁଅକୁ ନେଇ ଖତଗଦାରେ ପକେଇ ଦେଲା । ସେତିକିବେଳେ ଗୁରୁ ମେଘପାଳି ବରଷିଲାରୁ ରଜାପୁଅ ଦେହରେ ଜୀବ ପଶିଲା । ରଜାପୁଅ ଘୂଷୁରି ଘୂଷୁରି ଏକ ପୋଖରୀ କୂଳେ ପହଞ୍ଚିଲା, ସେ ପୋଖରୀରୁ ମନ୍ଦଏ ପାଣି ପିଇଲାରୁ ଦେହରେ ଟିକିଏ ବଳ ହେଲା । ତିନି ସଙ୍ଗାତକୁ ବାହୁନି ବାହୁନି କେତେ କାନ୍ଦିଲା । କାନ୍ଦିଲା ବେଳକୁ ଆଉ ହୀରା ନୀଳା ମୋତି ମାଣିକ୍ୟ ଝଡ଼ିବାକୁ ନାହିଁ । ରଜାପୁଅ ଅଚମ୍ଭିତ ହେଲା । ବିଚାରିଲା, ଆଜି ଏ ଜୀବନରେ କି କାର୍ଯ୍ୟ ! ଯା ବିଚାରି ପାଣିରେ ଝାସ ଦେବାକୁ ଯାଉଛି, ଗଙ୍ଗାମାତା ଆସି ଆଗରେ ବାଟ ଓଗାଳିଲେ, କହିଲେ, 'ତୋ'ର ବହୁତ ପରମାୟୁ ଅଛି, ତୁ କାହିଁକି ମରିବୁ ? ମୁଁ ତୋ ପାଇଁ ଏ ଖଟଟି ଆଣିଛି, ତୁ ଏ ଖଟଟି ନେ, ତୋର ବହୁତ କାମରେ ଆସିବ । ଖଟର ଚାରିଖୁରାରେ ଚାରୋଟି କମିଥା ଅଛି । ଗୋଟିଏ ଖୁରାରେ 'ବାନ୍ଧ ବାନ୍ଧ ଦଉଡ଼ି, ମାର ମାର ଠେଙ୍ଗା' ଅଛି । ସେ ଖଟ ଖୁରାକୁ କହିଲେ ଖଟ ଖୁରାରୁ ଗୋଟାଏ

ଦଉଡ଼ି ବାହାରିବ, ଖଣ୍ଡେ ଠେଙ୍ଗା ବାହାରିବ, ଯାହାକୁ ମନେ କରିବ ତାକୁ ବାନ୍ଧି ପକେଇ ପିଟି ସାଙ୍ଗ କରି ଦେବ । ଆଉ ଗୋଟିଏ ଖୁରାକୁ ଯେବେ କହିବ, ସେ ଖଟରେ ବସିଲେ, ଯୁଆଡ଼କୁ ମନ କରିବ ସିଆଡ଼କୁ ଶୂନ୍ୟେ ଶୂନ୍ୟେ ଚାଲିଯିବ । ଆଉ ଖୁରାଟିକି କହିଲେ ଶତ୍ରୁ ଆସିଲା ବେଳେ ଶତ୍ରୁ ଉପରେ ବାଲି କାଦୁଅ ବରଷି ଶତ୍ରୁକୁ ପୋତି ପକେଇବ । ତହିଁ ଆଉ ଖୁରାଟିକି ଯାହା କହିବ, ସେ ତାହା କରିବ ।' ରଜାପୁଅ ସେ ଖଟଟିକି ଆଣି ଫେରି ଆସି ମାଲୁଣୀଘରେ ପହଞ୍ଚିଲେ । ଫେରି ସେ ଅସୁରୁଣୀ ରଜାପୁଅ ପାଖକୁ ଆସିଲା । ରଜାପୁଅ ତ ଭୋଳ, ଛନ୍ଦ କପଟ କିଛି ଜାଣେ ନାହିଁ । ସେ ଅସୁରୁଣୀ ଦି'ପଦ କଅଁଳେଇ ସଅଁଳେଇ କହି ଦେଲାରୁ ରଜାପୁଅ ସବୁ କଥା ତା ଆଗରେ କହିଦେଲେ । ସେ ଅସୁରୁଣୀ ଘରେ ରଜାପୁଅ ଯାଇ ରହିଲେ । ଦିନା କେତେ ଗଲାରୁ ଗଙ୍ଗାରେ ବାରୁଣୀ ପଡ଼ିଲା । ଅସୁରୁଣୀ ରଜା-ପୁଅକୁ କହିଲା, 'ଚାଲ, ଆମେ ଯିବା ଗଙ୍ଗାରେ ବୁଡ଼ ପକେଇବା ।' ଦିହେଁଯାକ ମନପବନ ଖଟରେ ବସି ଗଙ୍ଗାସିନାନକୁ ଗଲେ । ସେଠେଇଁ ପହଞ୍ଚି ଅସୁରୁଣୀ ଗୋଟିଏ ପାଞ୍ଚ କଲା । ରଜାପୁଅକୁ କହିଲା, 'ମୁଁ ତ ଘରେ ଚୁଡ଼ି ଦି'ମୁଠା ଛାଡ଼ି ଆସିଲି; ନ ଆଣିଲେ ଗଙ୍ଗାରେ ବୁଡ଼ ପକେଇବି ନାହିଁ ।' ରଜାପୁଅ ଅସୁରୁଣୀ ମାୟାରେ ପଶି ପାରିଲେ ନାହିଁ, କହିଲେ, 'ହଉ, ତେବେ ଯା ଏ ଖଟରେ ବସି, ଚୁଡ଼ି ଘେନି ଆସିବୁ ।' ସେ ଅସୁରୁଣୀ ଖଟରେ ଚଢ଼ି ଘରକୁ ଗଲା । ସେ ଆଉ କି ଆସେ ! ରଜାପୁଅ ଚାହିଁ ଚାହିଁ ତା ଆଖିରୁ ପାଣି ମଲା । ସେ ଅସୁରୁଣୀ ଆଉ ଆସିବାକୁ ନାହିଁ । ପଛକୁ ରଜାପୁଅ ଚାହିଁ ଚାହିଁ ନିରାଶ ହେଲେ । ବିଚାରିଲେ, ଆଉ ଏ ଜୀବନରେ କି କାରଣ ? ହ୍ୱା ବିଚାରି ଗଙ୍ଗାରେ ଝାସ ଦେବାକୁ ବସିଲାବେଳକୁ ଗଙ୍ଗାମାତା ଆସି ହାତ ଓଗାଳିଲେ, କହିଲେ, 'ମୁଁ ତତେ ଗୋଟିଏ ଶୁଆ କରି

ଦଉଛି, ତତେ ଅମୁକ ଦେଶର ରଜାଝିଅ ଯୋଉଁ ଧନ ନେବ, ସେ ଧନ ତୋ ଦଶା ମେଣ୍ଟିବ । ତୁ ଉଡ଼ ଉଡ଼ ସେହି ରାଇଜକୁ ଯା ବାହାର ।' ରଜାପୁଅ ଶୁଆ ରୂପ ଧରିଲା, ଉଡ଼ି ଉଡ଼ି ଯାଇ ସେହି ରାଇଜରେ ପହଞ୍ଚି, ରଜା ନଅରପାଖ ନଡ଼ିଆଗଛରେ ବସିଥାଏ, ରାମନାମ ବୋଲୁଥାଏ । ରଜାଝିଅ ସକାଳୁ ଗାଧୋଇ ପାଧୋଇ ମୁଣ୍ଡ ଶୁଖେଇବାକୁ କୋଠା ଉପରକୁ ଆସିଛି, ଏ ଶୁଆଟିକି ଦେଖିଲା । ଶୁଆକୁ ଡାକିଲାରୁ ଶୁଆ ଆସି ହାତରେ ବସିଲା, ରଜାଝିଅ ତାକୁ ଭାରି ଆଦର କରି ରଖିଲା । ଶୁଆଟିକି ଘର ଭିତରେ ଛାଡ଼ିଦେଇଥାଏ, ରଜାଝିଅପାଇଁ ଖାଇବାକୁ ଥୁଆ ହୋଇଥାଏ, କେହି ନ ଥିଲା ବେଳେ ରଜାପୁଅ ଶୁଆଖୋଳରୁ ବାହାରି ସେତକ ଖାଏ, ରଜାଝିଅ ଆଚମ୍ବିତ ହୁଏ । ଦିନେ ରାତିରେ ଖୋଳରୁ ବାହାରି ରଜାପୁଅ ବାହାରକୁ ଯାଉଛି, ଏତିକି ବେଳେ ରଜାଝିଅ ତାକୁ ଧରିପକେଇଲା, କହିଲା, 'ତୁମେ କିଏ, କହ ।' ରଜାପୁଅ ତାକୁ ସବୁ କଥା କହିଲା । କେତେ ଉପାୟ କରି ସେ ଅସୁରୁଣୀଘରୁ ସେ ଖଣ୍ଡଟି ଚୋରେଇ ଆଣିଲେ । ସକାଳୁ ସେ ଅସୁରୁଣୀକି ଧରେଇ ଆଣି ଖଣ୍ଡ ଖୁରୁକୁ ଆଜ୍ଞା କଲାରୁ 'ମାର ମାର ଠେଙ୍ଗା, ବାନ୍ଧ ବାନ୍ଧ ଦଉଡ଼ି' ବାହାରି ସେ ଅସୁରୁଣୀ ଦେହଯାକ ଦଉଡ଼ି ଗୁଡ଼େଇ ହୋଇଗଲା, ଠେଙ୍ଗା ବାହାରି ଅସୁରୁଣୀକି ବାଡ଼େଇଲା । ଅସୁରୁଣୀ ହଗାଲଗା ହୋଇଗଲା । ରଜାପୁଅଠଉଁ ଯୋଉଁ ଅମୃତାକୁଆଟି ନେଇଥିଲା, ତାକୁ ଆଣି ଦେଲା, ସବୁ ଧନ ଦରବ ଦେଲା । ସେ ଅସୁରୁଣୀକି ଉପରଖଣ୍ଡା ତଳଖଣ୍ଡା କରି ପୋତେଇ ପକେଇଲେ, ରଜାପୁଅକୁ ରଜାଝିଅ ବାହା ହେଲା । ସେଥିରୁ ରଜାପୁଅ ସେ ଖଟରେ ଚଢ଼ି ବାହାରିଲା, ଯୋଉଁ ଦେଶରେ ମନ୍ତ୍ରିପୁଅ ରଜା ହେଇଛି, ସେହି ରାଇଜରେ ଯାଇଁ ପହଞ୍ଚିଲା । ଗୁରୁ

ଯାଇ ମନ୍ତ୍ରିପୁଅକୁ ଜଣା କଲେ, ମନ୍ତ୍ରିପୁଅ ଯାନ ବାହାନ ସୈନ୍ୟ ସାମନ୍ତ ଘେନି ଆସିବାରୁ ରଜାପୁଅ ଖଣ୍ଡ ଖୁରୀକୁ ଆଜ୍ଞା ଦେଲା, ଖଣ୍ଡ ଖୁରୀରୁ ବାଲି କାଦୁଅ ବରଷି ମନ୍ତ୍ରିପୁଅର ଦଳବଳଙ୍କୁ ପୋତି ପକାଇଲା । ଏହା ଦେଖି ମନ୍ତ୍ରିପୁଅର ବୁଦ୍ଧି ହଜିଗଲା । ଆସି ରଜାପୁଅର ଶରଣ ପଶିଲା । ରଜାପୁଅ ଖଣ୍ଡରୁ ଓହ୍ଲାଇଲା । ମନ୍ତ୍ରିପୁଅ, ରଜାପୁଅ, ସାଧବପୁଅ ତିନ୍ହା ପରିଚୟ ହେଲେ, ମହାଜନଘରକୁ ପିଅଦା ପଠାଇ କଟୁଆଳପୁଅକୁ ବେଢ଼ିରୁ ମୁକୁଳାଇ ଆଣିଲେ । ସମସ୍ତେ ଆନନ୍ଦରେ ଘର ଦୁଆର କଲେ, ମୁଁ ଗଳ୍ପରୁ କଥା ନ କହିଲେ ।

# ବୋଲେ ହୁଁ ଟି

ଏକ ରାଇଜରେ ଏକ ସାଧବପୁଅ ଥିଲା ଯେ, ତା ଭାରିଯା ଭାରି ସୁନ୍ଦରୀ, ରୂପରେ ତିନି ଭୁବନ ଆଲୁଅ କରୁଥାଏ । ଦିନେ ସେ ନଈକି ଗାଧୋଇ ଯାଇଛି, ରଜାପୁଅ ପାରିଧିକି ଯାଇଥିଲା ଯେ, ଯା ଉପରେ ରଜାପୁଅର ଆଖି ପଡ଼ିଗଲା । ରଜାପୁଅ ମନ ହେଲା ଏ ଝିଅଟିକୁ ବାହା ହେବ ବୋଲି । ବୁଝ୍ ବୁଝ୍ ସେ ସାଧବଘର ଭୂଅସୁଣୀ । ସାଧବ ଏ କଥା ଜାଣି ପାରିଲାରୁ ଭାରିଯାକୁ ମନା କଲା, 'ତୁ ଆଉ ନଈକି ଗାଧୋଇ ଯିବୁ ନାହିଁ ।' ଏଣେ ରଜାପୁଅ କଅଣ କରୁଥାଏ ନା, ନଈତୁଠରେ ଖଟିଆ ରଖିଥାଏ, ଅପେ ବନସି ପକାଉଥାଏ, ଗହଡ଼ିଙ୍କୁ କହୁଥାଏ, 'ସେ ମାଇକିନିଅ ଗାଧୋଇ ଆଇଲା ବେଳେ ମୁଁ ଠାରି ଦେବି ଯେ, ତୁମେ ତାକୁ ଖଟିଅରେ ପୂରେଇ ନଅରକୁ ନେଇ ଚାଲିଯିବ ।' ସାଧବବୋହୂ ଅଉ ଜମାରୁ ପଦାକୁ ବାହାରେ ନାହିଁ । ରଜାପୁଅ ଛକି ଛକି ଥାଏ । ଦିନାକେତେ ଗଲାରୁ ସାଧବ ବଣିଜ ବେପାରକୁ ଯିବ ବୋଲି ବୋଇତ ସଜ କଲା । ତା ଭଉଣୀଟି ନା' ଗଜସ୍ତ । ବାଡ଼ରେ ପୋଖରୀ ଖୋଳେଇଲା, ଘର ଚାରିପାଖେ ମେଘନାଦ ପାଚୀରି ବୁଲେଇଲା, ପାଚୀରି ଭିତରେ ଖଡରା, ଧୋବା, କାଚରା, ବଣିଆ, ତେଲି, ପାଠରା, ଭଣ୍ଡାରି, ମାଳି, କେଉଟ ସବୁ ପାଠକରୁ ଜଣେ ଜଣେ ଆଣି ବସେଇଲା, ଯିମିତି କୁଠାଖଣ୍ଡିଏ ପାଇଁ ଭାରିଯା ପଦାକୁ ନ ବାହାରେ । ସବୁ ଠିକ ଗଚ୍ଛୁ,ଗାଚ୍ଛୁ ରଖିଲା, ଭାରିଯାକୁ କହିଲା, 'ଦେଖ୍, ତିନିକାଳେ

ଘଡ଼ାକୁ କାହାଉରୁ ନାହିଁଟି ? ରଜାପୁଅ ଓରେ କଣ୍ଟ୍ରୁ ଧର ଜବ ବୋଲି ।' ଭଉଣୀଟିକୁ ଡାକଲା, ଭଉଣୀପାଖରେ ଭାଇଯାକୁ ସମର୍ପି ଦେଇ, କହିଲା, 'ତତେ ମୁଁ ବୋଲଇ ଗଉରୀ', ଗଉରୀ ବୋଲେ, 'ହୁଁ ଟି'।

| | |
|---|---|
| ଅଣି ଦେବ କୁଞ୍ଜ ଚଉଁରୀ | ବୋଲେ ହୁଁ ଟି |
| ରଜାପୁଅ ଭାଇ ହଟିଅ | ବୋଲେ ହୁଁ ଟି |
| ବାଟରେ ଥୋଇରୁ ଖଟିଅ | ବୋଲେ ହୁଁ ଟି |
| ଲୀଳାବତୀ ତତେ ଲାଗିଲା | ବୋଲେ ହୁଁ ଟି |
| ସୁନାରେ ବନସି କରନ୍ତୁ | ବୋଲେ ହୁଁ ଟି |
| ମିଛେ ମିଛେ ମାଛ ଧରନ୍ତୁ | ବୋଲେ ହୁଁ ଟି |
| ନଈକୁ ଗାଧୋଇ ନ ଯିବ | ବୋଲେ ହୁଁ ଟି |
| ବାଡ଼ରେ ମୁଦଗ ରଖିନ୍ତୁ | ବୋଲେ ହୁଁ ଟି |
| ମନ ହେଲେ ମୁଢ଼ି ପିନ୍ଧିବ | ବୋଲେ ହୁଁ ଟି |
| ବାଡ଼ରେ ଶଙ୍ଖାର ରଖିନ୍ତୁ | ବୋଲେ ହୁଁ ଟି |
| ମନ ହେଲେ ଶଙ୍ଖା ପିନ୍ଧିବ | ବୋଲେ ହୁଁ ଟି |
| ବାଡ଼ରେ ମାଲୁଣୀ ରଖିନ୍ତୁ | ବୋଲେ ହୁଁ ଟି |
| ବାଡ଼ରେ ଧୋବଣୀ ରଖିନ୍ତୁ | ବୋଲେ ହୁଁ ଟି |
| ବାଡ଼ରେ ବଣିଆ ରଖିନ୍ତୁ | ବୋଲେ ହୁଁ ଟି |
| ବାଡ଼ରେ ତନ୍ତୀକୁ ରଖିନ୍ତୁ | ବୋଲେ ହୁଁ ଟି |
| ବାଡ଼ରେ ପୋଖରୀ ଖୋଳନ୍ତୁ | ବୋଲେ ହୁଁ ଟି |

ସାଧବ ସବୁ କଥା କହିଗଲା, ଗଉରୀ ହୁଁ ହୁଁ କଲା । ନଣନ୍ଦ ଭାଉଜ ରହିଲେ, ଏ ଗଲା ବଣିଜକୁ । ଯାଉଁ ଯାଉଁ ବାଟରେ

କଦଳୀଗଛଟିଏ ଲଗେଇଲେ, କଦଳୀଗଛକୁ କହିଲେ, 'ତୁ ଯେବେ ସତ୍ୟଯୁଗର କଦଳୀଗଛ ହୋଇଥିବୁ, ମୁଁ ବାହୁଡ଼ିଲା ବେଳକୁ ମୋ ଭାରିଯାକୁ ଯେବେ ରଜାପୁଅ ହରି ନେଇଥିବ, ତେବେ ତୁ ମରିଯିବୁ; ମୋ ଭାରିଯା ଘରେ ଥିଲେ, ତୁ ଜୀଇଁଥିବୁ ।' କଦଳୀଗଛ ପୋତିଲେ, ଏ ଚିହ୍ନ ବୋଇତରେ, ଗଲେ । ନଣନ୍ଦ ଭାଉଜ ଦରଦୁଆର ଦେଇ ଥ ଅନ୍ତି ଅପଣା ସୁଖେ ସେ ପାଚୀରି ଭିତରେ । ରଜାପୁଅ ସେ ଭଣ୍ଡାରୁଣୀକି ଲୋଭ ଦେଖାଇଲେ, 'ଅଲୋ ! ମୁଁ ତତେ ଅଞ୍ଜୁଳାଏ ଅସରପି ଦେବି ତତେ ଘର ଦୁଆର ତୋଳେଇ ଦେବି, ତୁ ସାଧବ ଭାରିଯାକୁ ଫୁସୁଲେଇ କରି ନଇକି ଅଣ ।' ଭଣ୍ଡାରୁଣୀ ନଖ ଚମ କାଟିବ ବୋଲି ସାଧବ ଘରକୁ ଗଲା, ନଖ କାଟିଲା, ଅଳତା ନାଇ ଦେଲା ବେଳକୁ କହିଲା, 'ସାଅନ୍ତାଣି ଇମିତ ମହଲମେଲଛଟା ହେଇଛ କଅଁ ମ ? ଦେହରୁ ତ ଇଲଗେ ବୋଟେଁ ମଳି ବାହାରିବ, ଏ ସୁନା ଦେହକୁ ତୁମେ ଯାହା ନାରଖାର କରୁଛ ! ଇମିତ ହେଲେ ହାରି ଯିବ ଯେ ! ସାଅନ୍ତ ଅଇଲା ବେଳକୁ ପଞ୍ଜରା ହେଇଯିବ ଯେ !' ଏ କହିଲେ, 'ରଜାପୁଅ ପଣ୍ଡି ହଟ ଲଗେଇଛୁ !' ଭଣ୍ଡାରୁଣୀ କହିଲା 'ଏଇ ଜଡ଼ା କଥାଟାକୁ ଗଣ୍ଠି କରି ବସିଛ ? ପଙ୍କ ବାଲୁଅ ପାଣିରେ ଲୋଟି ଲୋଟି ଏ ସୁନା ଦେହକୁ ଚୂନା କରି ସାରଲଣି !' ଏ ତ ଏତେ ଛନ୍ଦ ନ ଜାଣେ ! ଭଣ୍ଡାରୁଣୀ କଥାରେ ଭୁଲିଗଲେ, ଗଲେ ବାହାର ନଇକି ଗାଧେଇ । ରଜାପୁଅ ତ ଜଗିଛି, ସାଧବବୋହୂ ନଇରୁ ଗାଧେଇ କରି ଯିମିତ କୂଳକୁ ଉଠିଛି, ସିମିତ ରଜାପୁଅ ଅସି ଓଗାଳିଲେ ବାଟ, କହିଲେ,—

ତତେ ମୁଁ ବୋଲଇ ଲୀଳା ଲୋ, ବୋଲେ ହୁଁ ଟି<br>
ବାଟ ମୂଳ ଦେଇ ଯାଅ ଲୋ, ବୋଲେ ହୁଁ ଟି

ସାଧବବୋହୂ କହୁଛି, 'ବେଙ୍କର କଣ୍ଠି ତୁ ନେ ରେ'; ରଜାପୁଅ କହୁଛି, 'ପାଣିକି ପକେଇ ଦେ ଲୋ'; ସାଧବବୋହୂ କହୁଛି, 'ହାତର ଖଡ଼ୁ ତୁ ନେ ରେ'; ରଜାପୁଅ କହୁଛି, 'ପାଣିକି ପକେଇ ଦେ ଲୋ'; ସାଧବବୋହୂ କହୁଛି, 'ସୁବର୍ଣ୍ଣ ଚୁଡ଼ି ତୁ ନେ ରେ'; ରଜାପୁଅ କହୁଛି, 'ପାଣିକି ପକେଇ ଦେ ଲୋ ।'

ସାଧବ ଭାରିଯା ଗୋଡ଼ଠାରୁ ମୁଣ୍ଡଯାକେ ଯେତେ ଅଳଙ୍କାର ଭରିଥିଲା, ସବୁ ରଜାପୁଅକୁ ଯାଚିଲା, ରଜାପୁଅ କହୁଛି, 'ପାଣିକି ପକେଇ ଦେ ଲୋ ।' ପଛକୁ ଏ କହୁଛି, 'ଆଜ ତୁ କଅଣ ନବୁ ରେ ?' ରଜାପୁଅ କହୁଛି, 'ତମର ଚିତୁଳୀ ନେବି ଲୋ ।' ଯେମିତି ସ୍ତ୍ରୀ କହୁଛି, ସିମିତି ଠାର ଦେଲା ଯେ ଗଜଡ଼ବାଜଡ଼ଯାକ ସାଧବବୋହୂକୁ ଖଟିଆରେ ପୂରେଇଲେ, ମୁହଁରେ କନାପୋଟଳୀ ବାନ୍ଧି ଦେଲେ, ନେଇଗଲେ । ଏ ପହିଲି ପହିଲି ଧନାକେତେ କାନ୍ଦିଲା, ବୋବାଇଲା, ରହିଲା । ରଜା ତାକୁ ନୂଆ ରାଣୀ କଲେ, ରଖିଲେ । ଇମିତି ଗଲା ଭାରି ପାଞ୍ଚ ଛ ବରଷ । ସାଧବ ବୋଇତ ଘିନି ଘରକୁ ଫେରି ଆଇଲା ବେଳକୁ ଦେଖେ ଯେ, ସେ କଦଳୀ ଗଛଟି ମଲାଣି । ଏ ଆଉ ଘରକୁ ଯିବା କଣ, ଯାହା ଟଙ୍କା ଟୋକର ଅରଜି ଆଣିଥିଲା, ତାକୁ ସବୁ ପାଣିରେ ଅଜାଡ଼ି ଦେଲା; ନାହୁରିଆଙ୍କୁ ବୋଇତଟି ଦେଲା, କଉପୁନି ଖଣ୍ଡିଏ ମାରିଲା, ଗଲା । ଧନାକେତେ ଗଳାରୁ ଜଟା ବଢ଼ିଲା, ପାଉଁଶଗୁଣ୍ଡାଏ ବୋଳି ହେଲା, ବୁଢ଼ା ଯୋଗୀ ଭଳିଆ ଦିଶୁଥାଏ । ଯାଇଁ ଭିକ ମାଗୁଥାଏ ବୁଲିବୁଲିକା । ରଜାଙ୍କ ନଅରରେ ଯାଇଁ ଭିକ ମାଗିଲା । କେନ୍ଦରାଟିଏ ବଜାଉଥାଏ, ବୋଲୁଥାଏ—'କେଁ କେଁ କେନ୍ଦରା ମୁଁ କେତେ ବଜାଇଲି ।
ଏକା ଲୀଳା ଲାଗି ଯୋଗୀ ହୋଇଗଲି ।'

ରଜାଙ୍କ ଦେହୁଡ଼ିରେ ଭିକ ମାଗିଲା, ଯେ ଆଣି ଭିକ ଦିଏ, ଅନ୍ତୁ ନେଇ ନ ଥାଏ । କହୁଛି, 'ନୂଆ ରାଣୀ ଭିକ ଦେଲେ ମୁଁ ନେବି, ଆଉ କାହା ହାତରୁ ନେବି ନାହିଁ ।' ନଅରଯାକ ହୁରି ପଡ଼ିଗଲା, ଯୋଗୀ ଆସିଛି ଯେ କାହାର ହାତରୁ ଭିକ ନବାକୁ ନାହିଁ, ଏକା ଅଇନ କାଢ଼ିଛି, ଯେବେ ନୂଆ ରାଣୀ ଭିକ ଦେବେ, ସେ ନବ, ନଇଲେ ସିଂହଦୁଆରୁ ଖାଲି ଥାଳୀ ଉଠିବ । ପଛକୁ ରଜା କହିଲେ, 'ହଉ, ରାଣୀ ସେ ଜଳାକବାଟି ପାଖକୁ ଯାଆନ୍ତୁ, ଜଳାବାଟେ ହାତ ଗଳେଇ ଭିକ ଦିଅନ୍ତୁ ।' ଯା କହିଲାରୁ ରାଣୀ ଭିକ ମୁଠାଏ ନେଇ ପଞ୍ଝର ବାଟେ ଦେଲାବେଳକୁ ବୁଢ଼ା ଯୋଗୀ ଝୁଲି-ମୁଣି ଭିତରୁ ପାରସା ଖଣ୍ଡିଏ ବାହାର କଲା, ଆପଣା ବେକରେ ଗ୍ରେଟେ ପକାଇଲା, ମଲା । ମଲାବେଳେ କହିଲା, 'ଯୋଉଁ ଲୀଳା ଲାଗି ମୁହିଁ ଯୋଗୀ ହୋଇ ଗଲି, ସେହି ଲୀଳା ଲାଗି ମୁହିଁ ହାଣି ହୋଇ ମଲି ।'

ରାଣୀ ଏକା ସେ କଥା ବୁଝିଲେ, ତୁନି ହୋଇ ରହିଲେ, ରଜା ପଚାରିଲାରୁ କହିଲେ, 'କେଜାଣି ବୁଢ଼ା ଯୋଗୀ କିଆଁ ହାଣି ହେଇ ମଲା !' ରଜା ହୁକୁମ ଦେଲେ ଚନ୍ଦନ କାଠ, ତୁଳସୀ କାଠ, ଘିଅରେ ସେ ଯୋଗିଙ୍କି ପୋଡ଼େଇ ଦବାକୁ । ଯୋଗିଙ୍କି ମଶାଣୀ ହୁଡ଼ାକୁ ନେଇ ଗଲେ । ନୂଆ ରାଣୀ ରଜାଙ୍କ ସାଙ୍ଗରେ ଲଗେଇଲେ ଯୋଗୀ ଡାହା ହେଲା ବେଳେ ଦେଖି ଯିବେ ବୋଲି । ରଜା-ରାଣୀ ବିଜେ କଲେ । ମଶାଣୀରେ ଯୋଗୀ ପାଇଁ ଜୁଇ ଖୋଳା ହେଲା, ମାଢ଼ପ ଶୁନ୍ଦାଣି ପଡ଼ିଲା, ଯୋଗିଙ୍କି ନେଇ ତା ଉପରେ ମୁହିଁ । ମାଡ଼ ଅଣ୍ଟେଇ ପକେଇଲେ, ସିଧାଡ଼ିଏ କାଠ ମୁହିଁ ଦେଲେ, ମୁଖାଗ୍ନି ଦେଲେ, ଘିଅ ଢାଳିଲାରୁ ନିଆଁ ହୁ ହୁ ହେଇ ଜଳିଲା । ରାଣୀ କଣ କଲେ, ନିଆଁ ଗୁରୁପାଖ ସାତ ଫେରା ବୁଲି ଆଇଲେ, ସେ

ନିଆଁ ଭିତରକୁ ଡେଇଁ ପଡ଼ିଲେ । ରଜା ବିଗୁଡ଼ିଲେ, 'ଯୋଗୀ ତ କେତେ ସହଜରେ ଆଣିଲା, ଏ ତ ମଲା, ମୁଁ ଜାଣି ଅଜ ବୋଲି କାରଣ ?' ଏହା କହି ରଜା ଜୁଇଗାତକୁ ଡେଇଁ ପଡ଼ିଲେ । ସମସ୍ତେ ମଶାଣିରୁ ନଅରକୁ ଫେରି ଆଇଲେ । ଅନେଶ୍ବତ ରାଣୀଯାକ ଦେଖିଲେ, ନୂଆ ରାଣୀ ଆଉ ରଜା ଫେରିଲେ ନାହିଁ । ବୁଝ୍, ବୁଝ୍, ଇମିତ ସମାଚାର । ରାଣୀଯାକ ବସି ବାହୁନି କାନ୍ଦିଲେ—

> ଯୋଗୀ ପିନା ମଲା ଯୋଗୀଅଣୀପାଇଁ
> ରଜା ମଲେ କାହାପାଇଁ ?
> ଅନେଶ୍ବତ ରାଣୀ ରାଣ୍ଡ କରି ଗଲେ,
> ଏକା ଯୋଗୀଅଣୀ ପାଇଁ ।

କାନ୍ଦିଲେ, ବୋବେଇଲେ, ହାତରୁ ଖଡୁ କାଢ଼ିଲେ, ରହିଲେ, ମୁଁ ଗଳ୍ପରୁ କଥା କହିଲେ ନାହିଁ ।



# ପଥରମୂଷି

ଏକ ଗ୍ରାମରେ ମାଈ ଛେଳିଟିଏ, ମାଈ ମାଙ୍କଡ଼ଟିଏ ସାଙ୍ଗ-ପଣତା ହୋଇ ଘର କରୁଥାନ୍ତି । ସେ ଦୁହଙ୍କର ଯୋଡ଼ିଏ ପିଲା ହେଲେ । ସେ ପିଲାଏ ବଡ଼ ହେଲେ । ଦିନେ ଛେଳି ତା ପୁଅକୁ କହିଲା, 'ହଇରେ ପୁତ ! ତୋର ତ ଏଣିକି ମୁଣ୍ଡକୁ ହାତ ପାଇଲାଣି; ତୁ ଯା', କିଛି ଅରଜା କରି ଆଣ, ଖାଲି ଘରେ ବସିଲେ କଅଣ ହବ ?' ଛେଳିଛୁଆ ଗଲା, ଯାଉଁ ଯାଉଁ ବାଟରେ ବାଘ ହାବୁଡ଼ରେ ପଡ଼ିଲା । ବାଘ କହିଲା, 'ମୁଁ ତତେ ଖାଇବି ।' ଛେଳିଛୁଆ କହିଲା, 'ମୁଁ ଯାଉଛି ରଜା ବାହାଘର ଯେ ଖିରିପିଠା ଖାଇ, ମୁଁ ଖାଇ ପିଇ ମୋଟ ହୋଇ ଫେରି ଆସିବି, ତୁ ଏଠେଇଁ ବସିଥା, ମତେ ଖାଇଲେ ପେଟ ପୂରିବ ।' ବାଘ କହିଲା, 'ହଉ ।' ଫେରି ଖଣ୍ଡେ ଦୂର ଯାଇଛି, ଭାଲୁ ହାବୁଡ଼ରେ ପଡ଼ିଲା । ଭାଲୁ କହିଲା, 'ମୁଁ ତତେ ଖାଇବି ।' ଛେଳିଛୁଆ ଭାଲୁକୁ ସିମିତ ଭଣ୍ଡେଇଲା, ଭାଲୁ ବାଟରେ ତହିଁ ବସିଲା, ଏ ଗଲା । ଫେରି ବିଲୁଆକୁ ଭେଟିଲା, ବିଲୁଆକୁ ସିମିତ କହିଲା, ଗଲା । ଯାଉଁ ଯାଉଁ ଏକ ଦେଉଳ ପଡ଼ିଲା । ଦେଉଳରେ ପଶି ଗଲା, ଦେଖିଲା ବେଳକୁ ଦିଅଙ୍କ ପାଖରେ ସୁନା ଅସରପି ଗଦା ହୋଇଛି । ସେଥିରୁ ପେଟେ ଗିଳିଲା, ଦେଉଳ ଭିତରେ କବାଟ କିଳି ପଶିଥାଏ । ଦେଉଳର ପଣ୍ଡା ଆସିଲା ଦିଅଙ୍କ ସେବା କରିବାକୁ । ଦେଖିଲା, ଭିତରୁ କବାଟ ଲାଗିଛି । କବାଟରେ ମାଇଲା, 'କିଏ ଅଛୁ ଏ ଦେଉଳ ଭିତରେ, କବାଟ ଫିଟା ।' ଛେଳି ତା ଭିତରେ ଥାଏ, କହିଲା—

ମି ମିଁ କା, ମାଣିକ ରଜା, ଶିଙ୍ଗ ଦୁଇଟା ଗୋଜା ଗୋଜା;
ଏକୋଶିଙ୍ଗକେ ପର୍ବତ ଟାଡ଼େଁ, ଦ'ଶିଙ୍ଗରେ ମଣିଷ ମାରେଁ;
ତାଳଗଛକୁ ଫୋପଡ଼ା କରେଁ, ନଡ଼ିଆଗଛକୁ ଦାନ୍ତକାଠି କରେଁ,
ପଣ୍ଡା ଦେଖିଲେ ମଣ୍ଡା କରେଁ, ମାଳ ଦେଖିଲେ ତାଲ କରେଁ ।

ପଣ୍ଡା ଏ କଥା ଶୁଣି ଥରଥର ହେଲା; ପଳେଇ ଯାଇ ରଜାଙ୍କ ଛାମୁରେ ଜଣା କଲା । ରଜା ଶୁଣି ଅଚମ୍ବିତ ହେଲେ; ରଜା ନିଜେ ଦେଉଳଠେଇଁକି ବିଜେ କଲେ । କବାଟରେ ମାଇଲେ, 'ଦେଉଳ ଭିତରେ କିଏ ରେ ? କବାଟ ଫିଟା ।' ଛେଳି ଆଉ କବାଟ ଫିଟାଉ ନ ଥାଏ । ଭିତରୁ ପାଟି କଲା—

ମିଁ ମିଁ କା ମାଣିକ ରଜା, ଶିଙ୍ଗ ଦୁଇଟା ଗୋଜା ଗୋଜା,
ଏକାଶିଙ୍ଗକେ ପର୍ବତ ଟାଡ଼େଁ, ଦ'ଶିଙ୍ଗରେ ମଣିଷ ମାରେଁ;
ତାଳଗଛକୁ ଫୋପଡ଼ା କରେଁ, ନଡ଼ିଆଗଛକୁ ଦାନ୍ତକାଠି କରେଁ,
ରଜା ଦେଖିଲେ ଖଜା କରେଁ, ରାଣୀ ଦେଖିଲେ କାଣୀ କରେଁ ।

ସମସ୍ତେ ଏହା ଶୁଣି ତାଟକା ହେଲେ, ଖସିକରି ସେଠୁଁ ପଳେଇଲେ । ଛେଳି ଦେଉଳ ଭିତରେ ଥାଏ । ବେଳ ବୁଡ଼ିଲା । ସନ୍ଧ୍ୟା ହେଲାରୁ ଦେଉଳ କବାଟ ଫିଟେଇ କରି ଦେଉଳରୁ ବାହାରିଲା ଘରକୁ ଯିବ ବୋଲି । ମନେ ମନେ ପାଞ୍ଚିଲା, 'ଇଲାଗେ ଗଲାବେଳକୁ ବାଟରେ ତ ବାଘ, ଭାଲୁ, ବିଲୁଆ ବସିଥିବେ ଗୁହିଁକରି ମତେ ଖାଇବେ ବୋଲି, କଅଣ କରିବି ?' ଏହା ବିଚାରି ବିଚାରି ଯାଉଥାଏ, ବାଟରେ ଏକ ପଙ୍କ ଗଡ଼ିଆ ପଡ଼ିଲା, ସେ ପଙ୍କରେ ଯାଇ ପଡ଼ିଲା । ପଙ୍କ-ଲଟପଟ ହୋଇ ଗଡ଼ିଆରୁ ଉଠି ଆସିଲା । ଗଡ଼ିଆକୂଳେ ଏକ ଓସ୍ତଗଛ । ସେ ଓସ୍ତଗଛ ମୂଳରେ ଶୁଖିଲା ଓସ୍ତପତ୍ରର ବହେ ଲେଖାଏଁ ଝଡ଼ିଛି । ସେଠେଇଁ ଗଡ଼େଇ ପଡ଼େଇ ହେଲା, ଦେହଯାକ ପଙ୍କରେ ଓସ୍ତପତ୍ର

ଲାଗେଇ । ଖାଲି ଅଖି ଯୋଡ଼ାକ ଜୁଳୁଜୁଳୁ ହୋଇ ଦିଶୁଥାଏ, ଗଲା ।
ଯାଉଛି—ବାଟରେ ବଲୁଅ ଗୁହିଁ ବସିଛି, ଛେଳି ଲେଉଟାଣି ଆସିଲା-
ବେଳେ ତାକୁ ଖାଇବ ବୋଲି । ବଲୁଅ ଯିମିତି ତାକୁ ଦେଖିଲା,
ଅଉ ଚିହ୍ନି ପାରିଲା ନାହିଁ, ପଚାରିଲା, 'ପଥରମୂର୍ତ୍ତି ଲୋ ପଥରମୂର୍ତ୍ତି !
ମିଁ କି ଦେଖିଛୁ କି ?' ଏ କହିଲା,'ମୁଁ କି ଜାଣେ ମିଁ ଫିଁ, ମୁଁ ଯାଇଥିଲି
ରଜାଘର ପଥର ସିଇଁ ।' ତା କଥା ନ ଜାଣିଲା ଭଳି ହୋଇ
ଚାଲି ଗଲା । ବଲୁଅ ଅଉ ଉଉସି କରି ତାକୁ କିଛି କହିଲା ନାହିଁ ।
ଖଣ୍ଡେ ଦୂର ଯାଇଛି, ଭାଲୁ ଗୁହିଁ କରି ବସିଛି । ଭାଲୁ ପଚାରିଲା,
'ପଥରମୂର୍ତ୍ତି ଲୋ ପଥରମୂର୍ତ୍ତି ! ମି କି ଦେଖିଛୁ କି ?' ଏ କହିଲା, 'ମୁଁ
କି ଜାଣେ ମିଁ ଫିଁ, ମୁଁ ଯାଇଥିଲି ରଜାଘର ପଥର ସିଇଁ ।' ଭାଲୁ ତୁନି
ହୋଇ ରହିଲା । ଛେଳି ସେଠୁଁ ବର୍ତ୍ତି କରି ଗଲା । ଖଣ୍ଡେ ଦୂର
ଯାଇଛି, ଆଗରେ ବସିଛି ବାଘମାମୁ, ନାଣ ଫୁଲେଇ ଲାଙ୍ଗୁଳକୁ ତଳେ
ବାଡ଼ଉଥାଏ । ତାକୁ ପଚାରିଲାରୁ ଏ ସିମିତି କହିଲା, 'ମୁଁ କି ଜାଣେ
ମିଁ ଫିଁ, ମୁଁ ଯାଇଥିଲି ରଜାଘର ପଥର ସିଇଁ ।' ବାଘ ସେଠୁଁ
ନାରାଶ ହୋଇ ଉଠି ଚାଲିଗଲା । ଛେଳି ଆସି ଆସି ସଞ୍ଜ ଅଧରେ
ଘରେ ପହଞ୍ଚିଲା । ମାକୁ କହିଲା, 'ମା ଲୋ ମା । ମତେ ବାଣ୍ଡକ
ମାଡ଼ୁଛି ।' ମା କହିଲା,'ମଲା ! ବାଣ୍ଡଅଡ଼ାକୁ ଯା, ଖତଗଦାରେ ହଗି
ବସିବୁ ଯା ।' ଏ କହିଲା, 'ନାହିଁ, ଅଗଣାରୁ ଅଗଏ ଲିପାପୋଛା କରି
ଦେ, ମୁଁ ପୋଖରୀପାଣି ବସିବି ।' ମା ଅଉ କଅଣ କରିବ, ମାଟି
ଗୋବରରେ ଅଗଣା ମଝିକୁ ଅଗଏ ଲିପାପୋଛା କରିଦେଲା । ଏ
କହିଲା,'ତୁ କାନି ପାର, ମୁଁ ହଗିବି ।' ପିଲା ତ ଆଗରୁ ଭେଲବସର
ସେରନ୍ଧ୍ରାରେ ବଢ଼ିଛି, ଏତେବେଳେ ମା ଅଉ କଣ କରିବ ?
ପଣନ୍ତ ପାରି ଦେଲାରୁ ଛେଳିଛୁଅ କୁନ୍ଥେଇଲା ବେଳକୁ ପଣନ୍ତ
କାନିରେ କାନିଏ ସୁନା ରୂପା ଅସରପି ଗଳି ପଡ଼ିଲା । ଦୋହଳରେ

ଯେତକଯାକ ଗିଳିଥିଲା, ସବୁ ବାହାରିଲା । ମାଈ ଯା ଦେଖି ଗୋଡ଼ ତଳେ ଲାଗୁ ନ ଥାଏ । ମାକୁ କହିଲା, 'ମା ଲୋ ମା, ତୁହି ଏ କଥା କିମିତି ଦ' କାନରୁ ଚାରି କାନ ନୁହେଟି । ମା 'ହଉ' କରିଲା । ସକାଳୁ ମାଈ ମାଙ୍କଡ଼ ଯା ଘରକୁ ବୁଲି ଅଇଲାବେଳକୁ ଦେଖେ, ଛେଳି ମାଣ ଗଉଣିରେ ସୁନା ରୁପା ମାପୁଛି । ମାଙ୍କଡ଼ ପଚାରିଲାରୁ ଛେଳି ମା କହିଲା, 'ମୋ ପୁଅ ଯାକୁ ସବୁ କାଲି ଅରଜନ କରି ଆଣିଛି ।' ମାଈ ମାଙ୍କଡ଼ ସେଥିରୁ ଛେଳିଛୁଆ ସାଙ୍ଗରେ ଲାଗେଇଲା, 'ତୁ ଏତେ ଟଙ୍କା ସୁନା କିମିତି ଆଣିଲୁ, ମତେ କହ, କାଲି ମୋ ପୁଅ ଯିବ, ଆଣିବ ।' ଛେଳିଛୁଆ କହିଲା, 'ମୁଁ ମୁଣ୍ଡରେ ଏକ କାଟ ପାରିଲି; ଯାଇ କରି ରଜା ନଅରରେ ଡେଇଁଲି, ଗୀତ ଗାଇଲି—'ମୁଣ୍ଡରେ କାଟ, କୁଅ ହଗିଦଏ ଲଟପଟ ।' ବାଟରେ ଯାହାକୁ ଦେଖିଲି, ଯା ବୋଇଲି । ଘରକୁ ଅଇଲାରୁ ମା ବାଡ଼େଇଲା ଯେ, ମୁଁ ଟଙ୍କା ସୁନା ହଗିଲି ।' ମାଙ୍କଡ଼ ମା ମାଙ୍କଡ଼ଛୁଆ ମୁଣ୍ଡରେ କାଟଟିଏ ପାରି ଦେଲା, ମାଙ୍କଡ଼ଛୁଆ ଯାଇ ରଜାଙ୍କ ନଅରରେ ଚାଳ ବାଡ଼ରେ ଡେଇଁଲା, ବୋଲୁଥାଏ—'ମୁଣ୍ଡରେ କାଟ, କୁଅ ହଗିଦଏ ଲଟପଟ ।' ସମସ୍ତେ ଦେଖି ହୁର୍ ହୁର୍ କଲେ, ଗୋଡ଼େଇ କରି ମାଙ୍କଡ଼କୁ ବାଡ଼େଇଲେ । ଏ ପଳେଇ ଅଇଲା ବେଳକୁ ବାଟରେ ଟଙ୍କାଟିଏ ପଡ଼ିଥିଲା, ତାକୁ ଗିଳି ଦେଲା । ଅସି ସରକି ଘରେ ପହଞ୍ଚିଲାବେଳକୁ ମା ଚାହିଁକରି ବସିଛି । ମାଙ୍କଡ଼ କିମିତି ଅସି ପହଞ୍ଚିଲା, ମା ଘରୁ ଠେଙ୍ଗାଟିଏ କାଢ଼ି ବାଡ଼େଇଲା ନିସ୍ତୁକ ଟାଙ୍କେ । ଜୀବନ ବିକଳରେ ମାଙ୍କଡ଼ଛୁଆ ଅଗରୁ ଯେଉଁ ଟଙ୍କାଟି ଗିଳିଥିଲା, ସେ ଖସି ପଡ଼ିଲା । ଫେର ଅଉ ବାହାରିବ ବୋଲି ବାଡ଼ଉ ବାଡ଼ଉ ମାଙ୍କଡ଼ଛୁଆଟି ମରିଗଲା । ତା ମା କାନ୍ଦ କାନ୍ଦ ପଛକୁ ତୁନି ହେଲା ।

# ବୁଢ଼ୀ ଅସୁରୁଣୀ

ରଜାପୁଅ, ମନ୍ତ୍ରିପୁଅ, ସାଧବପୁଅ, କୋଟୁଆଳପୁଅ ଚାରି ସଙ୍ଗାତ । ଚାରିହେଁଯାକ ବାହାରିଲେ ବିଦେଶ କରି । ଘୋଡ଼ାଶାଳରୁ ବାଛି ବାଛି ଚାରି ଘୋଡ଼ା ନେଲେ, ପାଗପଟୁକା ବାନ୍ଧି; ଟଙ୍କା ଚୋକର କଣ୍ଟି ଧଇଲେ, ଗଲେ । ଯାଉଁ ଯାଉଁ ଭଡଭଡଅ ଖରାବେଳେ ଏକ ନଈକୂଳେ ପହୁଞ୍ଚିଲେ; ସେଠିରେ ଗାଧୁଅ ପାଧୁଅ କଲେ, କହିଲେ, 'ଏଠେଇଁ ରନ୍ଧାବଢ଼ା କରିବା, ଖରା ବରଷା ପାଳିବା, ଘର ଲେଉଟିଲାରୁ ଆମ ରାସ୍ତା ଆମେ ଧରିବା ।' ରଜାପୁଅକୁ ପଠେଇଲେ, କହିଲେ, 'ଅର ପାରରେ ଘର ଦିଶୁଛି, ସେଠଉଁ ନିଆଁ ଆଣିଲେ ଚୁଲିରେ କୁହ୍ଲା ପକେଇବା ।' ରଜାପୁଅ ଯାଇଁ ପହୁଞ୍ଚିଲା । ସେ ଘରେ ଦେଖିଲା ବେଳକୁ ଏକ ବୁଢ଼ୀ ଅସୁରୁଣୀ ଗୋଡ଼ ଦ'ଟା ଚୁଲିରେ ମୁହିଁ ଦେଇଛି, ମୁଣ୍ଡ ମୁକୁଳା, ମୁହିଁଯାକ ମାଛି ଭଣଭଣ ବେଢ଼ୁଛନ୍ତି, ଚୁଲି ଉପରେ ଏଡ଼େ ହାଣ୍ଡିଏ ବସେଇ ଦେଇଛି, ବସିଛି । ରଜାପୁଅ ମାଗିଲା, 'ବୁଢ଼ୀ ମାଉସୀ ! ନିଆଁ ଟିକିଏ ଦେଇନାରୁ !' ବୁଢ଼ୀ କହିଲା, 'ଅରେ ପୁତ, ମୋ ବଳ ବୟସ ତ ଗଲଣି, ମୋ ଆଖିକି ଦିଶୁ ନାହିଁ, ଚୁଲିମୁଣ୍ଡରୁ ଅସି ନିଆଁ ଟିକିଏ ନେଇ ଯା ।' ରଜାପୁଅ ଚୁଲିମୁଣ୍ଡରୁ ନିଆଁ ଆଣିବାକୁ ନଇଁ ପଡ଼ିଲାରୁ ବୁଢ଼ୀ କଅଣ କଲା, ବେକମୁଣ୍ଡରୁ ଧରି ପଛ ଅଡ଼େ ଗାତ ଥାଏ ଯେ, ସେ ଗାତରେ ମାଡ଼ ଦେଲା, ରଜାପୁଅ ଅଣଅସ୍ତ ହୋଇ ରହିଲା । ତନି ସଙ୍ଗାତଯାକ ନଈକୂଳେ ଚାହିଁ ଚାହିଁ ଦ'ତନି ଘଡ଼ି ବିତ

ଗଲାରୁ ସାଧବପୁଅ ଗଲା । ସାଧବପୁଅ ଯାଇ ପହଞ୍ଚିଲାବେଳକୁ ବୁଢ଼ୀ ତାକୁ ସିମିତ କହିଲା; ଏ ନାଆଁ ଆଣିବାକୁ ଗଲାରୁ ତାକୁ ସେ ଗାତରେ ମାଡ଼ ଦେଲା । ପଛରେ ଗଲା, ଦ'ସଙ୍ଗାତ ନ ଲେଉଟିଲାରୁ କଟୁଆଳପୁଅ ଗଲା; ତାକୁ ସିମିତ ବୁଢ଼ୀ ଅସୁରୁଣୀ ସେ ଗାତରେ ପୂରେଇଲା, ସେ ଗାତ ମୁହଁରେ ପଟା ପକେଇ ତା ଉପରେ ଶିଳ ଚକ ମଡ଼େଇ ଦେଇଥାଏ । ସନ୍ଧ୍ୟା ବୁଡ଼ିଲାରୁ ଅସୁରୁଣୀ ଗଲା ଚରିବାକୁ । ମନ୍ତ୍ରିପୁଅ ତିନି ସଙ୍ଗାତଙ୍କୁ ଚାହିଁ ଚାହିଁ ଆସି ବେଳ ବୁଡ଼ିଲା, ଏ ପଟକୁ କେଉଁଠି କର ଗଲା ସେ ଘର ଅଡ଼କୁ; ଯାଇ ଦେଖିଲା ବେଳକୁ ଅସୁରୁଣୀ ଚରିବାକୁ ଗଲାଣି ବାହାର । ମନ୍ତ୍ରିପୁଅ ସେ ଘର ଭିତରକୁ ପଶିଗଲା ବେଳକୁ ସଙ୍ଗାରେ ମଣିଷ-ମୁଣ୍ଡ ମାଳକୁ ମାଳ ଝୁଲା ହୋଇଛି । ଏ ଘର ଭିତରକୁ ପଶିଗଲା ବେଳକୁ ମୁଣ୍ଡଗୁଡ଼ାକ କଲକଲରେଇ ହସି ଉଠିଲେ । ଏ ଚାହିଁଲା ବେଳକୁ ମୁଣ୍ଡଯାକ କହିଲେ, 'ଅରେ ପଳା ପଳା, ଆଉ ତିନି ଜଣଙ୍କ ଦଶା ତତେ ଘଟିବ ଯେ !' ଏ ପଚାରିଲା 'କଅଣ ?' ମୁଣ୍ଡଯାକ କହିଲେ,'ଅଜି ତିନି ଜଣ ନାଅଁ ମାଗି ଅସିଥିଲେ ଯେ, ତାଙ୍କୁ ମୋଡ଼ ମାଡ଼ ଏ ଗାତରେ ପୂରେଇଛି; ଯେଉଁ ଦିନ କିଛି ନ ମିଳିବ, ସେ ଦିନ ସେମାନଙ୍କୁ ଗୋଟି ଗୋଟି କରି ଖାଇବ, ମୁଣ୍ଡଯାକ ଝୁଲି ଦେବ ।' ମନ୍ତ୍ରିପୁଅ ସତକୁ ସତ ଶିଳ ଚକ ଉଠେଇ ପଟା ଖଣ୍ଡିକ କାଢ଼ି ଦେଲାରୁ ତିନି ସଙ୍ଗାତ ଝାଡ଼ି ଝୁଡ଼ି ହୋଇ ଗାତରୁ ଉଠିଲେ । ଚାରିହେଁଯାକ ଯାଇଁ ଘୋଡ଼ାରେ ବସିଲେ, ଘୁଟେ ଲେଖାଏଁ କୋରଡ଼ା ଘୋଡ଼ାକୁ ଲଗେଇଲେ, ଘୋଡ଼ାଏ ବାଇବଣ୍ଡ ହୋଇ ପଳେଇଲେ । ଶହ କୋଶ ଗଲାରୁ ଦମ୍ଭ ମାଇଲେ, ରହିଲେ, ରନ୍ଧାବଢ଼ା କରି ଖାଇଲେ, ପିଇଲେ, ଗଲେ । ଏମିତି ଯାଉଥାନ୍ତି, ତହିଁ ଆର ଦିନ ଏକ ଠାକୁରାଣୀଙ୍କ ମଣ୍ଡପ ପାଖରେ

ପହଞ୍ଚିଲାବେଳକୁ ସନ୍ଧ୍ୟା ହେଲା । ଘୋଡ଼ାଙ୍କୁ ଗଛମୂଳେ ବାନ୍ଧି ଦେଲେ, ଶୋଇଲେ, ବିଚାରିବାକୁ ହେଲେ, ଏ ତ ପର ଦେଶ, ଗଡ଼ରେ ଢୁସିଥିବାରୁ ଥିବା, ଏଠେଇଁ ଖଣ୍ଡି କି ଚୋର କି ତସ୍କର ଗଡ଼ରେ କାଳେ ଲୁଟି କରି ନେବେ ! ଚାରି ସଙ୍ଗାତଯାକ ରାତି ଚାରି ପହର ପାଳି କରି ଜଗି ବସିଲେ, ଜଣେ ଚେଇଁଲେ ଆଉ ତିନିହେଁ ଶୋଇବେ, ଏ କଥା ଥିର କଲେ । ପହିଲି ପହର ରଜାପୁଅର ପାଳି ପଡ଼ିଲା; ଏ ଜଗିଥାଏ, ଠାକୁରାଣୀ ବାହାରିଲେ, କହିଲେ, 'ଆରେ ଅଡ଼େଇ ଯା, ମୁଁ ଯିବି ।' ରଜାପୁଅ କହିଲା, 'ମୁଁ ଅଡ଼େଇ ହେବି ନାହିଁ । ଯିବୁ ଯେବେ, ଆଉ ବାଟେ ବୁଲି କରି ଯା ।' ଠାକୁରାଣୀ ପାଖ ଗଛରୁ ଧଳା ଫୁଲଟିଏ ଛିଣ୍ଡେଇଲେ, ସେ ଫୁଲଟିକି ଫୁଙ୍କି ଦେଲାରୁ ସେ ମଣ୍ଡପ ଉପରେ ହାଡ଼ ଶଗଡ଼େ କି ଦି' ଶଗଡ଼ ଗଦା ହୋଇଗଲା, ସେ ହାଡ଼ଗୁଡ଼ିକ ମନକୁ ଖଞ୍ଜି ଖାଞ୍ଜି ହେଇଗଲା । ସେ ଫୁଲଟି ସେଇଠେଇଁ ପଡ଼ିଥାଏ, ଠାକୁରାଣୀ ଉଭେଇ ଗଲେ । ରଜାପୁଅ ସେ ଧଳା ଫୁଲଟିକି ପାଇଲା, ରଖିଲା । ଆର ପହରକୁ ସାଧବପୁଅକୁ ଉଠେଇ ଦେଲା, ରଜାପୁଅ ଶୋଇଲା । ଫେର ସିମିତ ଠାକୁରାଣୀ ବାହାରିଲେ, ଯାଇକି କହିଲେ, ''ମତେ ବାଟ ଛାଡ଼ି ଦେ ।' ଏ କହିଲା, 'ତୁ ଆଉ ବାଟେ ବୁଲି କରି ଯାଉ ନାହୁଁ !' ଠାକୁରାଣୀ କଣ କଲେ, ସେ ଗଛରୁ ନାଲି ଫୁଲଟିଏ ଛିଣ୍ଡେଇ ନେଲେ, ଫୁଲଟି ଫୁଙ୍କି ଦେଲାରୁ ସେ ହାଡ଼ରେ ମାଉଁସ ଲାଗିଗଲା । ଫୁଲଟି ସେଇଠେଇଁ ପଡ଼ିଥାଏ, ଠାକୁରାଣୀ ଉଭେଇ ଗଲାରୁ ସାଧବପୁଅ ଫୁଲଟିକି ଗୋଟେଇ ରଖିଲା । ତହିଁ ଆର ପହରକୁ କୋଟୁଆଳପୁଅକୁ ଜଗିବାକୁ ଉଠେଇ ଦେଲା, ଶୋଇଲା । କୋଟୁଆଳପୁଅ ଜଗିଛି, ସିମିତ ଠାକୁରାଣୀ ଆସି ହାଜର ହେଲାରୁ ଏ ବାଟ ଛାଡ଼ିଲା ନାହିଁ । ଠାକୁରାଣୀ ସେ ଗଛରୁ କଳା ଫୁଲଟିଏ

ଅଣିଲେ, ଫୁଙ୍କି ଦେଲାରୁ ସେ ହାଡ଼ ମାଉଁସ ଉପରେ ଚମ ଚାଙ୍ଗୁଣୀ ଘୋଡ଼େଇ ହୋଇଗଲା । କଣ୍ଟାଆଳପୂଅ ଫୁଲଟିକି ରଖିଲା । ସବା ଶେଷ ପହରକୁ ମନ୍ତ୍ରିପୁଅର ପାଳି ପଡ଼ିଲା । ମନ୍ତ୍ରିପୁଅ ଜଗିଥାଏ, ଠାକୁରାଣୀ ଆସି ପହଞ୍ଚିଲେ, କହିଲେ, 'ଭଲ ଗଛ ଯେବେ ଅଛୁ, ପାଖେଇ ଯା, ମୁଁ ଯାଏଁ ।' ମନ୍ତ୍ରିପୁଅ କହିଲା, 'ଆଉ ବାଟେ ବୁଲି ଯା ।' ଠାକୁରାଣୀ କଣ କଲେ, ସେ ଗଛରୁ ହଳଦିଆ ଫୁଲଟିଏ ଛିଣ୍ଡେଇଲେ । ମନ୍ତ୍ରିପୁଅ ତିନି ସଙ୍ଗାତଙ୍କୁ ଉଠେଇ ଦେଲା । ଯିମିତ ଠାକୁରାଣୀ ସେ ଫୁଲକୁ ମଡ଼ା ଉପରେ ପକେଇ ଦେଲେ, ସିମିତ ମନ୍ତ୍ରିପୁଅ ସେ ଫୁଲକୁ ଝଟ୍ ଗୋଟେଇ ନେଲା, ଏଣେ ସେ ମଡ଼ା ଗୋଟାଏ ତାଳଗଛ ଜଙ୍ଘ ହୋଇ ଠିଆ ହୋଇଗଲା । ଠାକୁରାଣୀ କହିଲେ, 'ଗୋଡ଼ା ଏ ଚାରିଙ୍କି ।' ସେ ଅସୁର ଏ ଚାରି ଜଣଙ୍କୁ ଗୋଡ଼େଇଲା । ଘୋଡ଼ା ଘୋଡ଼ା ଚଢ଼ିବାକୁ ତର କାହିଁ ? ଜୀବନ ବଳରେ ଛିନ୍ନଛିନ୍ନ ହୋଇ ଏକାମୁହାଁକେ ସମସ୍ତେ ପଳେ ଲେ । ରଜାପୁଅ ପଳେଇଲା ଗୋଟାଏ ବାଟରେ, ଆଉ ତିନି ସଙ୍ଗାତଯାକ ଆଉ ଗୋଟାଏ ବାଟରେ ପଳେଇଲେ । ରାତି ଯିମିତ ଫସରଫାଟିଗଲା, ଏ ଅସୁର ଉଭେଇ ଗଲା । ଏ ଚାରିହେଁ ଏକା ନିଶ୍ୱାସକେ ଦଉଡ଼ୁଥାଆନ୍ତି, ପଛକୁ ଅନାଇବାକୁ ତର କାହିଁ ? ଖଣ୍ଡେ ଦୂର ଯାଇ ଦେଖିଲାବେଳକୁ ଅସୁର ଫସୁର କେହି ନାହିଁ । ତିନି ସଙ୍ଗାତ ଚାହିଁଲା ବେଳକୁ ରଜାପୁଅ ନାହିଁ, ରଜାପୁଅ ଦେଖିଲାବେଳକୁ ତିନି ସଙ୍ଗାତ ନାହାନ୍ତି । ଯେଝା କରମକୁ ଯେ ଅଦର ଗଲେ । ଏ ତିନିହେଁ କଅଣ କରନ୍ତି, ଚାରି ଖଣ୍ଡି ଦାନ୍ତକାଠି ଅଣନ୍ତି, ତିନି ଖଣ୍ଡି ଘଷନ୍ତି, ଖଣ୍ଡିଏ ପାଣିକି ପକେଇ ଦଅନ୍ତି; ଚାରି ଛାଟୁଆ ମାଳପା ଅଣନ୍ତି, ତିନି କଟୁଆ ଲଗାନ୍ତି, କାଟୁଆକ ଉଡ଼ି ଦଅନ୍ତି; ଚାରି ପତର ଭାତ ବାଢ଼ନ୍ତି, ତିନି ପତର ଖାଆନ୍ତି, ପତରକ ଭାତ କୁଆ କୁକୁରକୁ ଦଅନ୍ତି । ବରଷ-

ବାଟର ହୁଅନ୍ତି, ସଙ୍ଗାତ ତ ଗଲାଣି, ଆଉ ସତେ ତାଙ୍କୁ କିଏ ବଞ୍ଚି ଥାଉଁ ଥାଉଁ ଦେଖିବା ? ସାଧବପୁଅ କହିଲେ, 'ସଙ୍ଗାତ ହାଡ଼ତକ ମିଳନ୍ତା କି, ମୁଁ ସେଥିରେ ମାଉଁସ ଲଗେଇ ଦିଅନ୍ତି', କୋଟୁଆଳପୁଅ କହିଲା, 'ମୁଁ ଚମ ଛୁଆଣି କରି ଦିଅନ୍ତି'; ମନ୍ତ୍ରିପୁଅ କହିଲା, 'ମୁଁ ଜୀବନଦାନ ଦିଅନ୍ତି ।' ଇମିତି ବୁଲୁ ଥାଆନ୍ତି । ସଙ୍ଗାତ ଓବରେ ଥାଆନ୍ତି ।

ଏଣେ କଣ ହେଉଥାଏ, ରଜାପୁଅ ତ ଏକୁଟିଆ ପଡ଼ିଗଲେ, ଯାଉଁ ଯାଉଁ ଏକ ବନସ୍ତ ପଡ଼ିଲେ ଯେ, ସେ ବନସ୍ତରେ ଏକ ଭାରି ନଅର । ଏ ସେ ନଅର ଭିତରେ ପଶିଗଲେ, ନଅର ଭିତର ଶୁନ୍‌ଶାନ୍, ମାଛିଟିଏ ସୁଦ୍ଧା ଉଡ଼ିବାକୁ ନାହିଁ । ଦି'ତଳ ଖଞ୍ଜା ତେଇଁଲାରୁ ତଳେ ଝଲମଲ୍ ପଥର ପଡ଼ିଛି, ରୁପାର କାନ୍ଥ, ସୁନାର ଗୁଳ ହୋଇଛି, ହୀରା ନୀଳା ମୋତି ମାଣିକର ପଞ୍ଜରି ଲାଗିଛି, ଘର ଭିତରେ ଦିବ୍ୟ ସୁନ୍ଦର ମାଇପିଟିଏ ଶୋଇଛି । ରଜାପୁଅଙ୍କୁ ଦେଖି ପଚେଇଲାରୁ ଭେକିନା କାନ୍ଦ ଉଠିଲା; କହିଲା, 'ଅହା ! କେଡ଼େ ସୁନ୍ଦର ଶିଶୁ ମଣିପଟିଏ ! ତୁମେ କିଆଁ ଏଠିକି ଅଇଲ ? ମତେ ଏ ବୁଢ଼ୀ ଅସୁରୁଣୀ ଚୋରେଇ ଆଣିଲା, ମୁଁ ପିଲା ହୋଇଥିଲି, ମତେ କେଜାଣି କାହିଁକି ତା ମନ ହେଲା ନାହିଁ ଖାଇବାକୁ, ମତେ ଏଠି ରଖିଛି, ସେ ତ ଯାଇଛି ଚରି, ନେଉଟି ଅଇଲା ବେଳକୁ ତ ତୁମକୁ ଚାକୁଳିନା ଗିଳି ଦବ ।' ଏମା କହି ରଜାପୁଅଙ୍କୁ ଘରଭିତରକୁ ନେଲା, ଖାଇବା ପିଇବାକୁ ଦେଲା, ଭାରି ଆହ୍ଲାଦରେ ରହିଲେ । ଯିମିତି ସନ୍ଧ୍ୟା ବୁଡ଼ିଲା, ସିମିତି ରଜାପୁଅଙ୍କୁ ଗୋଟାଏ ମନ୍ତ୍ର ପଢ଼ି ଫୁଙ୍କି ଦେଲା ଯେ, ରଜାପୁଅ ମାଛିଟିଏ ହୋଇଗଲେ । ସେ ମାଛିଟିକି ଓଳିରେ ବସେଇ ଦେଲା, କହିଲା, 'ଯିମିତି ଅସୁରୁଣୀ ଚରିବାକୁ ଯିବ, ମୁଁ ଫେର ତୁମକୁ ମଣିଷ କରି ଦେବି ଯେ ।' ରଜାପୁଅ ମାଛିଟିଏ ହୋଇଥାଏ, ଅସୁରୁଣୀ ଚରି ବୁଲି ଅଇଲା, ଘରଯାକ ସୁଙ୍ଘିଲା, କହିଲା,

'ହଇଲୋ ଝିଅ, ମାଉଁ ମାଉଁ, ମଣିଷ ମାଉଁସ ଟିକିଏ ଖାଉଁ ।' ଝିଅ କହିଲା, 'ଖାଇବୁ ଯେବେ ମତେ ଖା, ମୁଁ କୋଉଠୁଁ ମଣିଷ ମାଉଁସ ପାଇବି ?' ଅସୁରୁଣୀ ବୁଢ଼ୀ ଜିଭ କାମୁଡ଼ି ପକେଇଲା, କହିଲା, 'ମୁଁ ତତେ ଖାଇବି ? କଅଣ ବାସିଲୁ ବୋଲି ମୁଁ ସିମିତି କହିଲି ନା ?' ଝିଅ କହିଲା, 'ଆଜି ହଳଦି ଗୁଅ ବୋଲି ହେଇଥିଲି ଯେ, ତତେ ବାସିଲା ।' ଚୋକା ଅଣି ବୁଢ଼ୀ ଆଗରେ ପାଞ୍ଚ ସାତ ହାଣ୍ଡି ଭାତ, ଦଶ କଂସା ତିଅଣ ଲୁଚେଇ ଦେଲାରୁ ବୁଢ଼ୀ ସେତକ ସାଲୁବାଲୁ କରି ଶେଷ କଲା, ଯାଇଁ ମଝି ଅଗଣାରେ ଗଡ଼ଗଡ଼େଇଲା । ଝିଅ କହିଲା, 'ମା ଲୋ, ଗୋଡ଼ ଟିକିଏ ଘଷି ଦିଅନ୍ତି !' ୟା କହି ତା ଗୋଡ଼ ଘଷିଦବାକୁ ଗଲା । ଗୋଡ଼ ଘଷୁଥାଏ, ତା ଆଖିରୁ ଟୋପାଏ ଲୁହ ବୁଢ଼ୀ ଅସୁରୁଣୀ ଗୋଡ଼ରେ ପଡ଼ିଲାରୁ ବୁଢ଼ୀ ସେ ଟୋପାକ ଗୃଠି ଦେଲା, କହିଲା, 'ହଇ ଲୋ ଝିଅ, ତୋର କୋଉଁ କଥା ଊଣା ଅଛି ଯେ ତୁ କାନ୍ଦୁଛୁ ?' ଝିଅ କହିଲା, 'ତୋ ପରି ମୁଁ ଆଉ ମାଆଟିଏ କାହୁଁ ପାଇବି ? ମୁଁ ଭାବୁଥିଲି, ତୁ ତ ଅସି ବୁଢ଼ୀ ହେଲୁଣି, ତୁ ଆଖି ବୁଜିଲେ ମୋ ଅବସ୍ଥା ବାରଗଣ୍ଡା ଦ'କଡ଼ା ହେବ, ମୋ କପାଳରେ କେତେ ହିନସ୍ତା ଅଛି, ମୋ ମନ କିଏ ବୁଝିବ ? ତୁ ମଲା ବାସି ଦିନ ମୁଁ ମରିବି ।' ବୁଢ଼ୀ ଅସୁରୁଣୀ ଠୋ ଠୋ ହେଇ ହସି ଉଠିଲା, କହିଲା, 'ଏହି କଥାକୁ ତୁ ବସି ଲୁହ ଗଡ଼ାଉଛୁ ! ଆମେ ଅସୁର ଜାତି ପରା ଅମରଲଡ଼ୁ ଖାଇଛୁଁ, ଆମର ଜୀବନନାଠିକା ନ ଶପିଲେ କଣ ଆମେ ମରୁଁ କି ?' ଝିଅ କଇଁ କଇଁ ହେଇ କହିଲା, 'ମା ଲୋ ମା, ତୁ ଆଉ କାଲିଠୁଁ ଚରି ବୁଲି ଯିବୁ ନାହିଁ । କାଳେ କିଏ କେଉଁଠେଇଁ ତୋ ଜୀବନନାଠିକା ଶପି ଦବ ! ମୁଁ ଅନାଥା ହେଇଯିବି ।' ବୁଢ଼ୀ କହିଲା, 'ଅଲୋ' ମୋଠେଇଁ କଣ ମୋ ଜୀବନନାଠିକା ଅଛି କି ?' ୟା କହି ବୁଢ଼ୀ ଧଡ଼ପଡ଼ ହେଇ ଉଠିଲା, ଭିତର ଖଞ୍ଜାକୁ ପଶିଗଲା ।

କୁଞ୍ଜପେଣ୍ଡ୍ରାଙ୍କ ଅଣ୍ଟାରୁ ଫିଟେଇ ଗୋଟାଏ ଗମ୍ଭୀର ଘର ଫିଟେଇ ଦେଲା, ସେ ଘରେ ଗଦାକୁ ଗଦା ଅସରପି । ଫେର ଗୋଟାଏ ଘରରେ କୋଲପ ଫିଟେଇ ଦେଲବେଳକୁ ଏକ କଳା ମେଣ୍ଢା ବନ୍ଧା ହୋଇଛି । ବୁଢ଼ୀ ଦେଖେଇ ଦେଲା, କହିଲା,'ଏହି ପଶୁ ମୋ ଜୀବନ-ନାଟିକା ! ଯାକୁ ଏକ ରଜାପୁଅ ଆସି ଏକମୁନା ଧର ଏକା ଭୁଷାକେ ଯେବେ ମାରପକେଇବ, ଏକମୁନା ପିଠିରେ ଫୁଟି ପେଟତଳେ ବାହାରିବ, ଅନ୍ତବୁଜୁଳା ବାହାର ପଡ଼ିବ, ତେବେ ମୁଁ ମରିବି । ନଇଲେ କଣ ମୁଁ ସହଜରେ ମରିବି କି ? ଏତେ ଭେଦ କିଏ ପାଇବ ଯେ ମୁଁ ମରିବି ?' ଝିଅ କହିଲା, 'ମା, ତୁ ତ କୁଞ୍ଜପେଣ୍ଡ୍ରାଙ୍କ ଅଣ୍ଟାରେ ରଖିଥାଉ, ମତେ ଡର ମାଡୁଛି, କାଳେ କୋଉଁ ରଜାପୁଅ ତୋ ଅଣ୍ଟାରୁ କୁଞ୍ଜମାଳ କାଢ଼ି ନେଇ, ଯାଡ଼େ ଆସି ଘରେ ପଶି ଜୀବନ-ନାଟିକା ଶପି ଦେବ !' ବୁଢ଼ୀ କହିଲା, 'ଅଲେ ଝିଅ ସତ କହିଲୁ, ମୋର ତ ଆଉ ଯୁଝିବାକୁ ବଳ ନାହିଁ । କାଳେ କୋଉଁ ରଜାପୁଅ ହାବୁଡ଼ରେ ପଡ଼ିଯିବି, ସେ କୁଞ୍ଜପେଣ୍ଡ୍ରାଙ୍କ ଛଡ଼େଇ ନେବ ଯେବେ, ମୋ ଜୀବନନାଟିକା ଶପି ଦେବାକୁ କେତେ ଅନ୍ତର ? କାଲିଠୁଁ ଚରିବାକୁ ଗଲବେଳେ କୁଞ୍ଜି ତୋ ପାଖରେ ରଖିଯିବି ଯେ ଅଣନ୍ତା ହୋଇ ବୁଲିବି, ଚରିବି ।' ଏହିଁ ଅରଦନ ଚରି ବାହାରିଲା ବେଳକୁ କୁଞ୍ଜି ଝିଅକୁ ଦେଇଗଲା । ଘଡ଼ିଏ ଖଣ୍ଡେ ଗଲାଠୁ ଏ ଝିଅ ରଜାପୁଅକୁ ମଣିଷ କରିଦେଲା, କହିଲା, ଇମିତ ଇମିତ କଥା । ଏ ଦିହେଁଯାକ ବାଘର ଘରେ ମିରିଗର ନାଟ କଲେ । କୁଞ୍ଜି ନେଇ ସବୁ ଘରଯାକ ଫିଟେଇ ଗମ୍ଭୀର ଘରେ ପଶିଲେ, ରଜାପୁଅ ଏକମୁନାଅଟାଏ ଧଇଲା, ସେ କଳା ମେଣ୍ଢାକୁ ଘିର ତାପନରେ ଏକମୁନାରେ ଭୁଷି ଦେଲା ଯେ, ଏକମୁନା ପିଠିରେ ଫୁଟି ପେଟତଳେ ବାହାରି ପଡ଼ିଲା; ମେଣ୍ଢାଟି ଛଟପଟ ହୋଇ ଗର୍ଜନ ରଡ଼ି ଛାଡ଼ି ବାଡ଼େଇ କଡ଼ୁଆଁ ହେଲା

ବେଳକୁ ସେ ବୁଢ଼ୀ ଅସୁରୁଣୀ ଚରୁଥିଲା,ତାକୁ ଜଣା ପଡ଼ିଲା ଯେ,ସେ କାଉଁଳିମାଉଁଳି ହୋଇ ଭୂଇଁରେ ଗଡ଼ିଲା, ଗର୍ଜନ ରଡ଼ିରେ ମେଘ ଭାଙ୍ଗି ପଡ଼ୁଥାଏ । ସେ ତହଳବିକଳରେ ଗୁଣ୍ଡେ ବାଲି ସମ୍ମୁଡ଼ି ପକେଇଲା । ଭୂଇଁ କାମୁଡ଼ି ଗରଳଗୁଡ଼ାଏ ବାନ୍ତି କରି ପକେଇଲା, ଛଟରପଟର ହୋଇ ତା ଜୀବ ଗଲା । ରଜାପୁଅ ଏ ଟୋକାକୁ ଗଭ୍ର ହେଲା, ଧନ୍ଦେଇଯାଇ ସେଠେଇଁ ଥାଆନ୍ତି । ଟୋକା କହିଲା, 'ଏ ତ ଅସୁର ରାଇଜ, ତୁମେ ପଦାକୁ ବାହାରିଲେ ଅସୁର ରଖିବେ ନାହିଁ, ତୁମେ ଘର ଭିତରେ ଥିବ, ମୁଁ ଯାଇ ପଦାରୁ ସବୁ ନେ ଅଣ କରିବି । ଖାଞ୍ଚି ପଡ଼ିଲେ ବେଳ ଜଣ୍ଡି ଏଠଉଁ ସବୁ ଗୋଟେଇ ପୋଟେଇ ପଳେଇବା ।' ଦିନେ ଏ ଟୋକା ଯାଇଛି ବଣକୁ କାଠ ଆଣି, ରଜାପୁଅକୁ ଘର ଭିତରେ ଶିକୁଳି ପକେଇ ଦେଇଯାଇଛି । ଏ ଯାଇ ବଣରେ କାଠ ଗୋଠେଇଛି, ସେ ରାଇଜର ରଜା ଆସିଥିଲେ ପାରିଧିକି, ଯାଙ୍କୁ ଦେଖିଲାକ୍ଷଣି ଘୋଡ଼ାରେ ବସେଇ ନେଇ ଚାଲିଗଲେ । ଏ ଦିନାକେତେ କାନ୍ଦିଲା, ବୋବେଇଲା, ରହିଲା । ରଜା କହିଲେ, 'ମୁଁ ତୁମକୁ ବଭ୍ର ହେବି ।' ଟୋକା କହିଲା, 'ହଉ, ମୋର ବାର ବରଷ ବ୍ରତ ଉଜୁଥିଁ ସରିଲେ ମୁଁ ବଭ୍ର ହେବି । ମତେ ଗୋଟିଏ ନଅର ତୋଳେଇ ଦିଅ, ମୁଁ ବାର ବରଷ ଅଣ୍ଡିରାପୁଅ ମୁହଁ ଚାହିଁବି ନାହିଁ, ମନ ହେଲେ ଦିନେ ଦିନେ ତୁମେ ଯାଇ ମତେ ସଙ୍ଗୁଳି ଆସୁଥିବ ।' ରଜା ସେଇଥିକୁ ଗୋଟିଏ ନଅର ତୋଳେଇ ଦେଲେ, ନୂଆ ରାଣୀ ସେଇଠେଇଁ ରହିଲେ ।

ଏଣେ କଣ ହେଇଥାଏ ନା, ତିନି ସଙ୍ଗାତଯାକ ଆସି ସେଇ ରଜା ରାଇଜରେ ପହଞ୍ଚିଲେ; ଚାକିରି ଖୋଜୁଥାନ୍ତି । ରଜାଙ୍କ ଘୁମ୍ବରେ ଜଣା କଲାରୁ ରଜା ପଚାରିଲେ, 'ତୁମେ କି କାମ କରିବ ?' ଏ କହିଲେ, 'ଆମେ ଯେବେ ଜଗୁଆଳି ହବୁଁ, ତେବେ ଠିଅ ଠିଅ

ସ୍ୱାଡ଼ ପାଇବ, ଅମ ଅଖିରେ ପଲକ ପଡ଼ବ ନାହିଁ ।' ରଜା କହିଲେ 'ହଉ, ତେବେ ଅମ ନୂଅ ନଅର ଦେହୁଡ଼ିରେ ତୁମେ ଜଗୁଥିଲ ହବ ।' ନଅର ଭିତରେ ପୋଖରୀ ଯେ, ସେ ପୋଖରୀକୂଳେ ଖଣ୍ଡିଏ ଘରେ ଏ ତିନିହେଁ ବସା କରି ଥାଅନ୍ତି । ସ୍ୱାତଯାକ ଦେହୁଡ଼ିରେ ଜଗନ୍ତି । ଦିନ ହେଲାରୁ ବସାକୁ ଯାଅନ୍ତି । ଦିନେ ସ୍ୱାଣୀ ସକାଳୁ ଉଠି କୋଠା ଉପରେ ଖରା ପୋଉଁଛନ୍ତି, ଏ ତିନିହେଁ ପୋଖରୀରେ ଦାନ୍ତ ଘଷିଲେ, ଖଣ୍ଡିଏ ଦାନ୍ତକାଠି ପାଣିକି ଫୋପାଡ଼ି ଦେଲେ; ଗୁର କାଠୁଅ ମାଲପାରୁ ତିନି କାଠୁଅ ଲଗେଇଲେ, କାଠୁଅକ ଇଞ୍ଚିଦେଲେ; ଏ ସବୁ ସ୍ୱାଣୀ ଦେଖୁଥାନ୍ତି । ଏ ସବୁ ସନ୍ଧ୍ୟାବେଳେ ଯିମିତ ଦେହୁଡ଼ି ଜଗିବାକୁ ଅସିଲେ, ସ୍ୱାଣୀ ତାଙ୍କୁ ପୋଇଲା ହାତରେ ଡକେଇ ପଠେଇଲେ । ସ୍ୱାଙ୍କୁ ଗୁରଖଣ୍ଡ ଦାନ୍ତକାଠି, ଗୁରକାଠୁଅ ମାଲପା କଥା ପଗ୍ଚରଲାରୁ ଏ ତିନି ସଙ୍ଗାତଯାକ ରଜାପୁଅ ସଙ୍ଗାତ କଥା କହିଲେ । ସ୍ୱାଣୀ ରଜାପୁଅଠଉଁ ତ ଆଗରୁ ଏ କଥାଯାକ ଶୁଣିଥାଏ, କାନ୍ଦି କାନ୍ଦି କହିଲା, 'ତୁମ ସଙ୍ଗାତଙ୍କୁ ତ ମୁଁ ପାଇଥିଲି ଯେ, ଇମିତ ଇମିତ କୋଳପ ପକେଇ ଅଇଲି ବାହାରି, ମତେ ଏ ରଜା ଧରି ଅଣିଲେ ।' ତିନି ସଙ୍ଗାତ କହିଲେ, 'ତା ହାଡ଼ ଖଣ୍ଡେ ମିଲିଲେ ଅମେ ବଞ୍ଚେଇ ଦବୁଁ, ଅମଠେଇଁ କମିଆଁ ଅଛି ।' ସେଥିରୁ ସ୍ୱାତଏ ସ୍ୱାତଏ ତିନି ସଙ୍ଗାତ ଅଉ ନୂଅ ସ୍ୱାଣୀ ନଅରରୁ ବାହାରି ପଳେଇ ଅସିଲେ । ଅସି ତିନି ଦିନ ଦୁ'ପହରରେ ଅସୁର ସ୍ୱାଜ ନଅରରେ ପହଞ୍ଚି ଦେଖିଲାବେଳକୁ ଦୁଅର ମୁହଁରେ କୋଳପ ଯୁଆଁ କୋଳପ ପଡ଼ିଛି । ଘର ଫିଟେଇ ଦେଖିଲା ବେଳକୁ ରଜାପୁଅ ଏକା କଡ଼କେ ପଲଙ୍କରେ ଶୋଇଛି, ଦେହ ଉପରେ ଉଇ ଢୁଙ୍କା କଲେଣି । ଏ ଠୋକା ସେ ଉଇମାଟିଗୁଡ଼ାକ ଧୂଅ ଧୋଇ କରି ଅଣିଲା, ଖଟ ଉପରେ ଖଞ୍ଜିଖାଞ୍ଜି ଦେଲା, ସାଧବପୁଅ ନାଲି ଫୁଲଟି ପକେଇ ଫୁଙ୍କି

ଦେଲାରୁ ମାଙ୍କଁ ସ ଲାଗି ଗଲା । କୋଟୁଆଳପୁଅ କଳା ଫୁଲଟି ସୁଙ୍ଘେଇ ଦେଲାରୁ ଚମ ଘୋଡ଼େଇ ହୋଇଗଲା, ମନ୍ତ୍ରୀପୁଅ ହଳଦଅ ଫୁଲ ଛୁଇଁ ଦେଲାରୁ ରଜାପୁଅ ଧଡ଼ପଡ଼ ହୋଇ ଉଠିଲା, ଆଖି ମଳି ଦେଇ, କହିଲା, 'ଓହୋ, କେତେଗୁଡ଼ାଏ ଶୋଇପଡ଼ିଲିଟି !' ଦିନ ସଙ୍ଗାତ ଆଜି ଏ ଠୋକା ଓର ଭଣ୍ଡି ସେ ଅସୁର ରାଇଜରୁ ଅସୁରୁଣୀ ଯାହା ଯିମିତ ଯେଉଁଠେଇଁ ରଖିଥିଲା, ସବୁ ନେଇ ଆପଣା ଦେଶକୁ ଫେରିଲେ । ରଜା ନୂଆ ବୋହୂକୁ ଦେଖି ଭାରି ଆନନ୍ଦ ହେଲେ । ସୁଖରେ ଘର ଦ୍ୱାର କଲେ, ରହିଲେ ।



# କୁହୁକମଣ୍ଡଳ ଚଢ଼େଇ

ଏକ ମହାଜନ ଥିଲେ ଯେ, ତାର ତିନି ପୁଅ । ଦି'ପୁଅ ବାହା ହୋଇଥାନ୍ତି, ସେ ମହାଜନଟି ମରିଗଲା । ସାନପୁଅ ଅଭିଆଡ଼ା ଥାଏ । ବାପ ମଲାରୁ ଏ ଦି'ଭାଇ ବାହାରିଲେ ବଣିଜ କରି । ବୋଇତ ସଜ ହେଲା, ଅନୁକୂଳ କରି ଗଲାବେଳେ ପଚାରିଲେ, 'ବିଦେଶରୁ କାହାପାଇଁ କଣ ଆଣିବୁଁ, କହ ।' ବଡ଼ବୋହୂ କହିଲା, 'ମୋ ପେଇଁ ଖଣ୍ଡିଏ କଳାମେଘୀ ପାଟ ଆଣିବ ।' ଆର ବୋହୂ କହିଲା, 'ମୋ ପେଇଁ ମେଘଡମ୍ବରୁ ଶାଢ଼ୀ ଖଣ୍ଡିଏ ଆଣିବ ।' ସାନ ଭାଇକି ପଚାରନ୍ତେ ସାନ ଭାଇ କହିଲା, 'ମୋ ପେଇଁ କୁହୁକମଣ୍ଡଳ ଚଢ଼େଇଟିଏ ଆଣିବ ।' ଏ ଦି'ଭାଇଯାକ ବୋଇତରେ ଚଢ଼ିଲେ, ଚଲେ ।

ଯାଇଁ ଯାଇଁ ଏକ ରଜା ମୁଲକରେ ଲାଗିଲେ । ସେଠେଇଁ ରଜାଙ୍କୁ ଦେଖା କଲେ, ହୀରା ନୀଳା ମୋତି ମାଣିକ ଭେଟି ଦେଲେ, ସେ ରାଇଜରେ ବରଷେ ଛ ମାସ ବଣିଜ ବେପାର, ବିକା କିଣା କଲେ । ଲେଉଟାଣି ବେଳକୁ ରଜାଙ୍କ ଛାମୁରୁ ମେଲାଣି ଘେନି ଆଇଲେ । ସେ ରାଇଜରୁ ବୋହୂମାନଙ୍କ ପେଇଁ କଳାମେଘୀ ପାଟ, ମେଘଡମ୍ବରୁ ଶାଢ଼ୀ ଇଚିତ ଦି'ଖଣ୍ଡ କିଣିଲେ, ବାହାରିଲେ ଆପଣା ମୁଲକକୁ । ବୋଇତରେ ଆସି ପହଞ୍ଚିଲେଣି, ମନେ ପଡ଼ିଲା, 'ଆରେ, ସାନଭାଇ ତ କହିଥିଲା ଗୋଟିଏ କୁହୁକମଣ୍ଡଳ ଚଢ଼େଇ ନେବାକୁ, ନ ନେଲେ ତ ସେ ମନ ଦୁଃଖ କରିବ !' ଯା ବାହୁଡ଼ି ଫେରିଲେ, ଯାଇ ଫେରି ସେ ରଜାଙ୍କ ପାଖରେ ପହଞ୍ଚିଲାରୁ ରଜା ପଚାରିଲେ, 'କି ହୋ, ଆମଠଇଁ ମେଲାଣି ଘେନି ଯାଇଥିଲ, ଫେରି ଆଇଲଣି କିଆଁ ?'

ଦ'ଭାଇ କହିଲେ, 'ମଣିମା, ଆମ ସାନଭାଇ ମାଗିଥିଲା ତା ପେଇଁ ରାଇଜରୁ କୁହୁକଅଣ୍ଡ୍ରଲ ଚଢ଼େଇଟିଏ ନବାକୁ, ହାଟବାଟରେ ଯୋଉଁଠେଇଁ ସେ ଚଢ଼େଇ ଖୋଜିଲୁଁ, ସମସ୍ତେ କହିଲେ, ସେ ଚଢ଼େଇ ଏଠେଇଁ ମିଳିବ କାହୁଁ ? ମଣିମାଙ୍କ ରାଇଜକୁ ଆସିଛୁଁ, ସେ ଚଢ଼େଇ ମଣିମାଙ୍କ ରାଇଜରେ ନ ମିଳିଲା ବୋଲି ଆମ ଦେଶରେ ଯେବେ ପ୍ରଘଟ ହବ, ତେବେ ତ ମଣିମାଙ୍କୁ ଭାରି ଲେଉକସରମ ହବ; ଏଥିପାଇଁ ମଣିମାଙ୍କ ଛାମୁରେ ଏ କଥା ଜଣା କରବୁଁ ବୋଲି ଫେରି ଅଇଲୁଁ ।' ରଜା ତ ଏକବାଗିଆ, କହିଲେ, 'ଅଚ୍ଛା, ଦନେ ଦ'ଦନ ଏଠେଇଁ ରହ, ଆମେ ସେ ଚଢ଼େଇ ଆଣି ଦବା ।' ଯୁା କହି ରଜା ତାଙ୍କ ମୁଲକଯାକର କେଳାଙ୍କୁ ଡାକରି ପଠେଇ ଧରେଇ ଆଣିଲେ, କହିଲେ, 'ଯେବେ ଦ'ଦନ ଭିତରେ ଆମକୁ ସେ ଚଢ଼େଇକି ଆଣି ନ ଦବ, ତେବେ କେଳାଯାକଙ୍କର ସବଂଶେ ମୁଣ୍ଡକାଟ ହବ ।' କେଳାଯାକର ଯୁା ଶୁଣି ଦହରୁ ରକତ ଶୁଖିଗଲା । କେଳାଯାକ ଯେଣ୍ଟା ଓର ଆରରେ ନଳ ଅଠାକାଠି ଧନି ଗଲି ଗଲି ଥକିଲେ, ତେବେ ସେ ଚଢ଼େଇ ଅଉ ହାବୁଡ଼ରେ ପଡ଼ିଲା ନାହିଁ ।

ଏକ ବୁଢ଼ାକେଳା ବନସ୍ତଯାକ ବୁଲି ବୁଲି, କେତେ ପାହାଡ଼ ଖୋଲି ଖୋଜି ଖୋଜି ଆସି ଜଦହୁଦଆ ଦ'ପହର ବେଳେ ଏକ କଦମ୍ବଗଛମୂଳେ ଥକାମରା ହେଇ ବସିଛି, ବାସୁରୁଛି, କାଲି ସକାଳୁ ତ କେଳାଯାକ ନିର୍ମୂଳ ହେବେ । ସେ ଗଛରେ ଏକ ଶାଗୁଣା ବସା । ଶାଗୁଣା ଯାଇଥିଲା ଛୁଆଙ୍କ ପେଇଁ ଅଧାର ଆଣି, ସେତକି ବେଳକୁ ଅଧାର ଧିନି ଫେରି ଅଇଲା । ଛୁଆଙ୍କୁ ଅଧାର ଦେଲା ବେଳକୁ ଛୁଆଯାକ ବୋବେଇଲେ, 'ମା ଲୋ ମା, ଆମ ପେଟର କଣେ ସୁଦ୍ଧା ତ ପୂରିଲା ନାହିଁ । ଆମକୁ ଅଉ କଣ ଦେ ଖାଇବାକୁ । ହେଇଟି ପରା ଆମ ପେଟ ଛାତିକୁ ଆପରି ଲାଗି ଯାଉଛି ।' ଶାଗୁଣା କହିଲା, 'ଅରେ,

ଯିବ ଏ, ଅଳ୍ପ ଧନର ଥଯ୍ୟ ଧର, ଢେଙ୍କ ଦହେ ଦହେ ମାର, ବାଲ୍ ସବାଙ୍କୁ ମନ ଇଚ୍ଛା ଅହାର ମିଳିବ, ତିନି ଦିନ ତିନି ପକ୍ଷ ତିନି ମାସ ଖାଇ ଖାଇ ଗଲୁଁ। ହେଲେ ପରା ସରିବ ନାହିଁ!' ଏ ଛୁଆପୁଅ କହିଲେ, 'ତୁ ଆମକୁ ମିଛରେ ମିଛରେ ଭଣ୍ଡୁଛୁ।' ମା କହିଲା, 'ନାହିଁ ମ ନାହିଁ, ରଜା ପରା ଅଜ୍ଞା କରିଛନ୍ତି, କୁହୁକମଣ୍ଡଳ ଚଢ଼େଇ ନ ଦେଲେ ବାଲ୍ ସବାଙ୍କୁ ଏ କେଳାଯାକ ସବଂଶେ ହାଣ ପାଇବେ। କେଳାଯାକ ସତେ ସେ ଚଢ଼େଇକି ପାଇବେ ଯେ ବର୍ତ୍ତିବେ? ସଇଜଯାକ କେଳା ମଲେ ତୁମେ କେତେ ମାଂସ ଖାଇବ ଖାଉଥା।' ଏ ଛୁଆଏ ପଚାରିଲେ, 'ଭଲା ସେ ଚଢ଼େଇ କୋଉଠେଇଁ ଅଛି?' ଶାଗୁଣା କହିଲା, 'ଆମେ ଯେଉଁ ଗଛରେ ବସା କରିଛୁଁ, ସେ ପରା ଏଇ ଗଛ କୋରଡ଼ରେ ଅଛି, ତା କଣ ଏ କେଳାଯାକ ଜାଣନ୍ତି ଯେ ତାକୁ ଧରିବେ?' ବୁଢ଼ା କେଳା, ଯିମିତି ଏତିକ ଶୁଣିଲା, ସିମିତି ହୁକାନି ସେଠୁଁ ଉଠିଲା, କୁହାଟ ମାରିଲାରୁ ସବୁ କେଳାଯାକ ରୁଣ୍ଡ ହେଲେ। ସବୁ କେଳାଙ୍କୁ କହିଲା, 'ଏଣ ଏ ଗଛକୋରଡ଼ ଭିତରେ, ସେଇଠେଇଁ କୁହୁକମଣ୍ଡଳ ଚଢ଼େଇ ବସା, ଧରିବା ସେ ଚଢ଼େଇକି, ନେଇ ରଜାଙ୍କୁ ଭେଟିବା।' ସତକୁ ସତ କୋରଡ଼ ଦଉଣ୍ଡିଲା ବେଳକୁ ସେ ଚଢ଼େଇ ଅଛି। ସେ ଚଢ଼େଇ ଦଣ୍ଡକେ କଙ୍କିଟିଏ ଭଳି ଖୁଦର ହୋଇ ଯାଉଛି; ଫେର ଦଣ୍ଡକେ ଫୁଲଶାଗୁଣା ଭଳିଆ ହସ୍ତାନ୍ତକ ହୋଇ ଯାଉଛି। ସେ କେଳାଯାକ ତାକୁ ମୁଣିରେ ପୂରେଇଲେ, ରଜାଙ୍କ ସମ୍ମୁଖରେ ନେଇ ଥୋଇଦେଇ ଲମ୍ବଲମ୍ବ ଜୁହାର ହେଲେ। ରଜା ଚଢ଼େଇକି ଦେଖି ଭାରି ଖୁସି ହେଲେ, କେଳାଯାକଙ୍କୁ ମୁଣ୍ଡରେ ବାନ୍ଧିବାକୁ ଖଣ୍ଡେ ଲେଖାଏଁ ଶିରପା ଦେଲେ, ମହାଜନଙ୍କୁ ସେ ଚଢ଼େଇକି ଦେଲେ। ମହାଜନପୁଅ ଆନନ୍ଦରେ ବୋଇତକୁ ଅଇଲେ, ଅପଣା ମୁଲକକୁ ମୁହାଁଇଲେ। ବୋଇତ ଅସି ଘର

ପାଣରେ ଲାଗିଲାରୁ ତେଣୁ ଦୁହେଁ ଅସି ବୋଇତକୁ ବନ୍ଧେଇଲେ, ମହାଜନପୁଅ ବୋଇତରୁ ଟଙ୍କା ଟୁଙ୍କର ଘିନି ଘରକୁ ଆଣିଲେ । ଧ' ବୋହୂଙ୍କୁ କଳାମେଘୀ ପାଟ, ମେଘଡମ୍ବରୁ ଶାଢ଼ୀ ଦେଲେ, ସାନ ଭାଇଙ୍କ ସେ ଲୁହକମଣ୍ଡଳ ଚଢ଼େଇଙ୍କ ଦେଲେ । ଚଢ଼େଇଟି ସାନପୁଅ ପାଖରେ ରହିଲା ।

ଦିନେ ଚଢ଼େଇ ତା ଖାଉଁଦକୁ କହିଲା, 'ସାଆନ୍ତେ, ବଡ ଭାଇ ଧନେ ତ ବାହା ହେଲେ, ପୁଅ ମାଇପ ଘିନି ଘର ଦୁଆର କଲେ, ତୁମେ ବାହା ହେଉ ନାହିଁ ?' ଏ କହିଲା, 'ମୋ ଲାଗି କନ୍ୟା ମିଳିଲେ ନାହିଁ, ମୋ ବାପ ମତେ ବାହା କରେଇ ନ ଥିଲେ । ବାପାଙ୍କର ତ କାଳ ହେଲା । ମୋ ସରସା କନ୍ୟା ମିଳିଲେ ଯିନା ମୋ ହାତଗଣ୍ଠି ପଡ଼ିବ !' ଚଢ଼େଇ କହିଲା, 'ଏଇ କଥା ତ, ଅଚ୍ଛା', ମୁଁ ଯାଉଛୁ ତୁମ ପାଇଁ କନ୍ୟା ଖୋଜି ଆଣିବ ।' ମହାଜନପୁଅ କହିଲା, 'ହଉ, ତେବେ ଯା ।' ଚଢ଼େଇ ଗଲା ଉଡ଼ଉଡ଼ିକା । ମୁଲକଯାକ ଅନ୍ଦସା କଲା । ସତକୁ ସତ ଯିମିତ ଯିନା ଗୋଟିଏ ଗୁହ୍ଲରେ ଗଢ଼ା କନ୍ୟାଟି ତା ଆଖିରେ ପଡ଼ିଲେ ଅସି ମହାଜନପୁଅକୁ କହନ୍ତା ! ଖୋଜି ଖୋଜି ନିରାଶ ହେଲାରୁ ଉଡ଼ଉଡ଼ିକା ସାତ ସମୁଦ୍ର ଲଙ୍କା ପାରି ଏକ ଟାପୁରେ ଯାଇ ପହଞ୍ଚିଲା । ସେ ଟାପୁରେ ଏକ ରଜା ଯେ, ତାର ଏକ ଜେମାଦେଈ । ସେ ଜେମାଦେଈଙ୍କ ଲାଖି ବର ଘଟନା ନ ହେବାରୁ ତା ଉପରେ ଆଜଯାଏ ବାଡ଼ୁଅ ପାଣି ପଡ଼ିବାକୁ ନାହିଁ । ଜେମାଦେଈରୂପରେ ତିନିପୁର ହସୁଛି, ଯିମିତ ସ୍ୱରଗ ଅପସରୀ ଦହର ରଙ୍ଗ ଚମ୍ପାଫୁଲ ପରି ଝଲକୁଛି, ଟିପ ମାରିଦେଲେ ଲହୁ ବାହାରି ପଡ଼ିବ । ଚଢ଼େଇ ଯିମିତ ଯାକୁ ଦେଖିଲା, ମନେ ବିଗୁରିଲା, ଏପରି କନ୍ୟାକୁ ସେପରି ବର ଘଟାଇଛି । ଦୁହିଙ୍କି ବିଧାତା ଏକା ଗୁହ୍ଲରେ ଗଢ଼ିଛି ।

କେମାଦେଇ ଢୋଠା ଉପରେ ବସି ମୁଣ୍ଡ ବାନ୍ଧୁଛି, ଏ ଚଢ଼େଇ ଯାଇ ପାଟ ଭୂଲିଆ ଶୁଆଟିଏ ହୋଇ ପାଖରେ ବସିଲା, ଗୁମ ନାମ ବୋଲୁଥାଏ । ଏ କେମାଦେଇ ଗୋଟିଏ କଇଁଶକାକୁଣ୍ଡ ଆଣି ଦେଖେଇ ଡାକିଲା, କହିଲା, 'ଆହା, କି ସୁନ୍ଦର ଶୁଆଟିଏ !' ଚଢ଼େଇ କହିଲା, 'ମତେ ତ ଦେଖି ଏତେଧାଏ ଝୁର ହଉଛ, ମୋ ଖାଉଁଦକୁ ଦେଖିଲେ ତୁମ ମନ କଅଣ ନ ହବ ? ତୁମେ ସତ୍ୟ କର, ମତେ ଯେବେ ପଞ୍ଜରୀରେ ନ ପୂରେଇବ, ମୁଁ ତୁମକୁ ଧଗ ଦେବି ।' କେମାଦେଇ ସତ୍ୟ ସତ୍ୟ ତିନି ଥର ସତ୍ୟ କଲାରୁ ଏ ଚଢ଼େଇ ଆସି କେମାଦେଇ ହାତରେ ବସିଲା । କେମାଦେଇ କହିଲା, 'ତୋ ଖାମିଦ କିଏ ?' ଏ କହିଲା, 'ତୁମ ପରି କନ୍ୟାକୁ ସେ ପରି ବର ବିହି ବିଧାତା ଗଢ଼ିଛି ।' କେମାଦେଇ ମନ ଭାର ହଟାଟ ହେଲାଣି । କହିଲା, 'ମୁଁ ଥିଲେ ତୋ ଖାମିଦକୁ କେମିତି ଆଖିରେ ଦେଖନ୍ତି କି ?' ଏ କହିଲା, 'ହଉ, ତେବେ ମୁଁ ଯାଉଛି ମୋ ଖାଉଁଦକୁ ଆଣେ, ସେ ତ ଯାଇ ସାତ ସମୁଦ୍ର ଲଙ୍କା ପାରିରେ । ଆଉ ଗୋଟିଏ କଥା, ତୁମର ତ ରଜାନଅର, ମୁଁ ତାଙ୍କୁ ଏ ନହର ଭିତରକୁ କେମିତି ଆଣିବି ? ରଜା ଜାଣିଲେ ଆଉ ରଖିବେ ! ତୁମେ ମତେ ଠାବ ଦିଅ ଯେ, ମୁଁ ମୋ ଖାଉଁଦକୁ ସେଠେଇଁ ଆଣି ଆଗେ ରଖିବି, ତୁମକୁ ଆସି କହିବି ଯେ, ତୁମେ ଯାଇ ସେଠେଇଁ ତାଙ୍କୁ ଦେଖି ଆସିବ ।' କେମା ସଙ୍କେତ ଦେଲା ପୋଖରୀକୂଳକୁ । ଏ ଚଢ଼େଇ ସେଇଥିରୁ ଉଡ଼ ଉଡ଼ ସାତ ସିନ୍ଧୁ ପାର ହେଲା, ଆସି ମହାଜନପୁଅ ପାଖରେ ପହଞ୍ଚିଲା, କହିଲା ଏପରି ଏପରି ସମାଚାର । ମହାଜନପୁଅ କହିଲା, 'ସେ ଠାପୁ ଯାଇ କୁଆଡ଼େ ବୋଲି କୁଆଡ଼େ, ମୁଁ ଏବେ ଏତେ ବାଟ ପାରି ହୋଇ ଯିବି କେମିତି ?' ଚଢ଼େଇ କହିଲା, 'ଏଇ କଥା ତ, ତୁମେ ବସ ମୋ ପିଠି ଉପରେ, ମୁଁ ଉଡ଼ ମନ କଲେ ଏକାଦନ ଏକାସତରେ ତୁମକୁ ନେଇ

ସେ ଟାପୁରେ ପହଞ୍ଚେଇ ଦେଲେ ତ ଅଡୁଆ ତୁଟିଯିବ ।' ମହାଜନପୁଅ ପହିଲୁ ପହିଲୁ ଏ କଥାକୁ ଖିଅସ ମଣିଲା, ପଛକୁ ଚଢ଼େଇ ନିଜ ରୂପ ଦେଖେଇ ଦେଲାରୁ ମହାଜନପୁଅ ମଙ୍ଗିଲା । କାହାକୁ କହିଲା ନାହିଁ, ବୋଇଲା ନାହିଁ, ଏ ଚଢ଼େଇ ପିଠିରେ ବସିଲା । ଚଢ଼େଇ ଉଡ଼ି-ଉଡ଼ିକା ସାତସମୁଦ୍ର ପାରି ହେଲା, ଯାଇ ପହଞ୍ଚିଲା ସେ ଟାପୁରେ । ମହାଜନପୁଅକୁ ସେ ପୋଖରୀକୂଳେ ବସାଇଲା, ଶୁଆଟିଏ ହେଲା; ଉଡ଼ି କରି ଯାଇ ଜେମା ପାଖରେ ଏ ଆସିବା କଥା କହିଲାରୁ ଜେମା ଆଇଲା ମହାଜନପୁଅକୁ ଦେଖିବାକୁ । ଯିମିତି ଏ ମହାଜନପୁଅ ଉପରେ ଜେମାଦେଈର ଆଖି ପଡ଼ିଲା, ଜେମା ସେ ରୂପରେ ତ ଏକାତାନକେ ଭୋଳ । ନହରକୁ ଜେମାଦେଈ ବାହୁଡ଼ି ଆସି ଗୋଟାଏ ଘରେ ମୁହିଁ ମାଡ଼ି ଶୋଇଲା; ଯେ ଯେତେ ପଗ୍ଭରିଲେ ଆଉ ପାଟି ଫିଟେଇବାକୁ ନାହିଁ । ରାଣୀ ପୋଇଲୀ ପରିବାରଙ୍କ ହାତରେ ବୁଝେଇ ପଠେଇଲାରୁ ପୋଇଲୀଏ ଯାଇ ରାଣୀଙ୍କି କହିଲେ 'ପୋଖରୀକୂଳରେ ଜଣେ ବିଦେଶୀ ଆସି ବସିଛି ଯେ, ଜେମାକୁ ତା ସଙ୍ଗେ ବିଭା ନ କରେଇଲେ ଜେମା ଆଉ ଜୀବନ ରଖିବେ ନାହିଁ ।'

ଏ କଥା ଯାଇ ରଜାଙ୍କ କାନରେ ପଡ଼ିଲା । ରଜା ଏବେ କଣ କରୁଛନ୍ତି, ହିଅ ବୋଲି ଗୋଟିଏ ଦୁଲଣା, 'ହଉ, ଚାଲ ଆମର ସେ ବିଦେଶୀକି ଦେଖି ଆସିବା ।' ରଜା ପୋଖରୀକୂଳରେ ମହାଜନପୁଅକୁ ଦେଖିଲାକ୍ଷଣି ତା ରୂପରେ ଭୋଳ ହେଇଗଲେ । ସେଥିରୁ ବିଭାଘର କରିବାକୁ ତତପର କଲେ । ଦୁହିଙ୍କର ବିଭାଘର ହେଲା । ଚଢ଼େଇ କହିଲା, 'ତୁମେ ଦୁହେଁ ମୋ ପିଠିରେ ବସ, ମୁଁ ସାତସମୁଦ୍ର ପାରି କରି ନେଇ ତୁମ ଘରେ ପହଞ୍ଚେଇ ଦିଏଁ ।' ମହାଜନପୁଅ ମଙ୍ଗିଲାରୁ ତା ଶଶୁର ରଜା କହିଲେ, 'ଯିବ ତ, ଦିନାକେତେ ଏଠେଇଁ ରହ ।' ରଜା ଏକ ନଅର ତୋଳେଇ ଦେଲେ । ଏ ଦୁହେଁଯାକ ଆଉ ସେ

ଚଢ଼େଇଟି ଭାରି ଆନନ୍ଦରେ ଧନାକେତେ ସେ ଜଙ୍ଗଲରେ ରହିଲେ । ଦିନ ଦିନ କରି କେତେ ମାସ ବିତିଗଲା । ଜେମାଙ୍କର ଉତ୍ତମ ସୁନ୍ଦର ବାଳୁତ କୁମରଟିଏ ଜନମ ହେଲା । ଏ ଚଢ଼େଇ ମହାଜନପୁଅ ସଙ୍ଗରେ ଲାଗେଇଥାଏ, 'ଚାଲ, ଆମର ଦେଶକୁ ଯିବା ବାହାରି ।' ଚାହୁଁ ଚାହୁଁ ସେ ପୁଅଟି ଅଡ଼ି ତିନି ଚାରି ବରଷର ହୋଇଗଲା ।

ଏଣେ ଫେର ଜେମାଙ୍କ ଦିହ ଗରୁ ହେଲା । ଚଢ଼େଇ ଏ ଅବସ୍ଥା ଦେଖି ମହାଜନପୁଅକୁ କହିଲା, 'ଏଣିକି ଏଣିକି ମୋ ବୋଝ ମତେ ବଳେଇବ, ଆଉ ଉତ୍ତୁରି ହେଲେ ଜମାରୁ ଯାଇ ପାରିବା ନାହିଁ । ଏକା ଥିଲ, ଦୁଇ ହେଲ, ଚାହୁଁ ଚାହୁଁ ତିନି ହେଲ, ଧନାକେତେ ଗଲାରୁ ଏଣିକି ଚାରିଜଣ ହବ, ଏଣିକି ମୋ ବୋଝ ମତେ ବଳାଇଲାଣି, ଆଉ ତାହିଁକି ରହ ରହ ହଉଛ, ଆସ, ଯିବା ତୁମ ରାଇଜକୁ ।' ଜୋଇଁ ଯାଇ ଶ୍ୱଶୁରଙ୍କୁ ଏ କଥା ଜଣାଇଲାରୁ ଶଶୁର କେତେ ଧନ ଦରବ ଯଉତୁକ ଦବାକୁ ବସିଲେ । ଚଢ଼େଇ କହିଲା, 'ଆମର ଧନ ଦରବ ଏତେ ବାଟ କିଏ ବୋହି କରି ନବ ? ଆମେ ଠୁଙ୍ଗା ଠୁଙ୍ଗା ଯିବୁ ।' ମହାଜନପୁଅ, ଜେମା ଆଉ ପୁଅ ତିନିହେଁ ସେ କୁହୁକମଣ୍ଡଳ ଚଢ଼େଇ ପିଠିରେ ବସିଲେ, ଚଢ଼େଇ ଉଡ଼ିଲା । ଅଧେ ବାଟ ଟପିଲେ କି, ଉପରେ ମେଘ, ତଳେ ସମୁଦ୍ର, କଳାବମ୍ବର ପାଣି ଲହଡ଼ି ଉପରେ ଲହଡ଼ି ଭାଙ୍ଗୁଛି, କୁଆଡ଼େ ଅନ୍ତ ନାହିଁ, କି ଚଢ଼େଇର ବେଣ୍ଟ ନାହିଁ, ଏତିକି ବେଳକୁ ଯୋଗ ତ, ଜେମା ତ ବୋଝେଇ ଓଜା, ତାଙ୍କ ଦିହ କଣ ହେଲା । ଚଢ଼େଇ କହିଲା, 'କିଛି ପରୁଆ କର ନାହିଁ, ମୁଁ ଅଖି ପଲକ ନ ପଡ଼ୁଣୁ ନେଇ ତୁମକୁ ଆର ପାରିରେ ପହଞ୍ଚେଇ ଦେବି ।' ଯା କହି ଦୋହରି ବେଗରେ ଉଡ଼ିଲା, ଉଡ଼ିଉଡ଼ି କାହିଁ ଆସି ସମୁଦ୍ର ପନ୍ତାରରେ । ଏ ତିନିହେଁ ଯିମିତି ତା ପିଠିରୁ ଓହ୍ଲେଇଲେ, ସିମିତି ଜେମାଙ୍କୁ ଶୂଳ ଅଇଲା, ଦେଖ୍ ଦେଖ୍ ଗୋଟିଏ ସୁନ୍ଦର ଅଣ୍ଡିରପୁଅଟିଏ ଜନମ

ହେଲା । ସମସ୍ତଙ୍କ ଉପର ଅନ୍ଧାର ଘୋଟିଲା, ସମୁଦ୍ର ପହାର, ଉହ
ଉହ ବାଲି, କଦଳୀବଣ ଖଣ୍ଡ, କେହ୍ନ ଜନ ପ୍ରାଣୀ ନାହିଁ, ସେଥିରେ
ପୁଣି ଘୁଲୁଘୁଲିଆ ବାଆ ବହୁଛି, ଫଦାଫଦାଏ, ଖାଲି ମଣିଷର ତ ଦେହ
ଦୋଳି ମାରି ଯାଉଛି, ଏ ତ ସହଜେ ଅଣ୍ଡିଶ୍ଚ ଛର୍ଲ୍ୟା । ମହାଜନପୁଅ
ମୁଣ୍ଡରେ ହାତ ଦେଇ ବସିଗଲା । ଚଢ଼େଇ କହିଲା, 'ସାଥନ୍ତ !
ଏଠେଇଁ ବସିଲେ କଣ ହବ ? ଗୁହୁଁ ଗୁହୁଁ ପୋଖତ ଅଙ୍ଗରେ
ଇଲଗେ ସନ୍ଧ ଘୋଟିଯିବ ଯେ । ତୁମେ ଯାଅ, ଏ ବଣରୁ ଶୁଖିଲା
କାଳ କୁଣ୍ଡେ କ ଦ'କୁଣ୍ଡ ଗୋଟେଇ ଅଣ, ମୁଁ ଯାଉଛି ନିଅ ଲଣ୍ଡାଏ
ଅଣେ, ଏଠେଇଁ ଅନୁଢ଼ କାଲି ପିଲକୁ ଥଇ ତା ମାକୁ ସେଙ୍କବା,
ଟିକଏ ସାଷ୍ଟମ ହେଲରୁ ମୋ ପେଠିରେ ବସିବ, ମୁଁ ଘରେ ପହଞ୍ଚେଇ
ଦେବ ।'

ଚଢ଼େଇ ଗଲା ନିଆଁ ଅଣି । ଯାଉଁ ଯାଉଁ ବାଟରେ କଣ ହେଇଛି
ନା, ହାତ ଗୋଡ଼ ନାହିଁ, ମାଉଁସ ମେଞ୍ଚି ଏକ ଅପଙ୍ଗୁ ଗୋଟିଏ
ଗଛମୂଳେ ବସିଛି । ଯିମିତ ଏ ଚଢ଼େଇଦେହ ପବନ ସେ କୋଢ଼ିଆ
ଦେହରେ ଧାପ୍‌ସା ବାଜିଗଲା, ସିମିତ ଖଣ୍ଡିଅଯାକ କଅଁଳ ଉଠିଲା, ହାତ
ଗୋଡ଼ ଅଙ୍ଗୁଠିଯାକ କଅଁଳଲା । ଅପଙ୍ଗୁ ବିଗୁରିଲା, କଣ, ଏ ଚଢ଼େଇ
ବା' ମୋ ଦେହରେ ଲଗିଲାରୁ ମୋ ଘାଯାକ କୁଅଡ଼େ ଉଭେଇ ଗଲା !
ଏ ତ ଭାରି ଅଚମ୍ବିତ କଥା ! ଭଲା ଏ ଚଢ଼େଇ ମାଉଁସ ଖାଇଲେ ତ ମୁଁ
ନିରୋଗୀ ହୋଇଯିବ !' ଘ୍ୟା ବିଗୁରି ସେଠେଇଁ ବସିଥାଏ । ଘଡ଼ିଏ ଖଣ୍ଡେ
ଗଲାରୁ ସେ ଚଢ଼େଇ ନିଆଁ ଲଣ୍ଡେଏ ଘେନି ଫେରିଲାବେଳକୁ ଏ
କୋଢ଼ିଆ ତାକୁ ଡାକିଲା, 'ହେ ଭାଇ, ମୁଁ ପିଲା ଲଗାନ୍ତୁ,
ମୋ ଦେହ କାଢ଼ ଯାଉଛି; ମତେ ଟିକଏ ନିଆଁ ଦିଅନ୍ତୁ ।' ଏ
ଚଢ଼େଇ ତ ଏତେ ଛନ୍ଦ କପଟ ନ ଜାଣେ । ଘ୍ୟା ପାଖରେ
ଚଢ଼େଇ ନିଆଁ ଥୋଇ ବସିଲାବେଳକୁ ଏ ମୂରୁଖ କଣ କଲା
ନା, ସେ ଚଢ଼େଇକୁ ଧଡ଼ାଏ ପିଟିଦେଲା ଯେ, ଚଢ଼େଇଟି

ଛୁଟି ଛୁଟି ହୋଇ ମରିଗଲେ । ଭୋଡ଼ିଆ ଅଳପେଇଷ କଣ କଲେ ନା, ଦ'ଖଣ୍ଡ ଭାଠ ସାଉଁଟି ଅଣି ନିଆଁ ଟିକିଏ ଲଗାଇଲେ, ଏ ଗଡ଼େଇ-ଠଙ୍କ ଡେଣା, ପର, ଥଣ୍ଟ, ଗୋଡ଼ ଓପାଣ୍ଡ ପକେଇଲେ, ସେ ଗଡ଼େଇ ମାଉଁସତକ ପୋଡ଼ି ଖାଇଲେ, ଅପଣା ସୁଖେ ଘରକୁ ଗଲେ ।

ଏଣେ କଣ ହେଉଥାଏ, ମହାଜନପୁଅ ତ ବନସ୍ତକୁ ଯାଉଛି ଜାଲ ଗୋଟେଇ, ସେ ରାଇଜର ରଜା ଅଣ୍ଟକୁଡ଼ା, ସେ ମଲାରୁ ପାତ୍ର ମନ୍ତ୍ରୀ କଣ କଲେ, ରଜାଙ୍କ ପାଟହାତୀ ଉପରେ ସୁନା କଳସ ରଖିଥାନ୍ତି, ପାଟହାତୀ ବୁଲୁଥାଏ, ଯାହା ମୁଣ୍ଡରେ କଳସ ଢାଳି ଦବ, ସେ ରଜା ହବ, ଗାଦିରେ ବସିବ । ପାଟହାତୀ ବୁଲୁଛି, ବଣରେ ମହାଜନପୁଅ ହାତ୍ରୁଡରେ ପଡ଼ିଗଲାରୁ ହାତୀ ମହାଜନପୁଅ ଉପରେ କଳସ ଢାଳିଦେଲା । ଯିମିତ ଢାଳି ଦେଲା, ସିମିତ ପାତ୍ର ମନ୍ତ୍ରୀ ଅସି ମହାଜନପୁଅକୁ ଧରି ନେଲେ । ଏ ତ ସେତେବେଳେ ଧୁଙ୍ଗା ହେଇଗଲା, ତାକୁ ନେଇ ଗାଦିରେ ବସେଇଲେ । ଏଣେ କଣ ହେଉଥାଏ ନା, ଜେମା ପାଖରେ ବଡ଼ପୁଅଟିଏ ବସିଥାଏ, କଅଁଳାପିଲାଟି କୁଅଁ କୁଅଁ କାନ୍ଦୁଥାଏ, ଜେମ ଗେରସ୍ତ ଅଭ ଏ ଗଡ଼େଇ କେଳଟାଣିକୁ ଗୁହିଁ ଗୁହିଁ ଅଖିରୁ ପାଣି ମଲା, ଅସି ବେଳ ବୁଡ଼ିବାକୁ ହେଲାଣି, ପଛରୁ ବଡ଼ପୁଅକୁ କହୁଲା, 'ତୁ ଏଠେଇଁ ଜଗି ବସିଥା, ମୁଁ ଯାଏଁ କନାପଟା ଦ'ଖଣ୍ଡ ହକାଳି ଧୋଇ ଧାଇ ନେଇ ଅସେଁ ।' ବଡ଼ପୁଅ କହୁଲା, 'ହଉ, ଯା ।' ଜେମା ଯାଇ ସମୁଦ୍ରକୂଳରେ ଲୁଗା ହକାଳୁଛି, ସିଅଡ଼ୁ ଅସି ଏକ ବୋଇତ ପହଞ୍ଚିଲା । ବୋଇତଅଳ କହୁଲା, 'ଅରେ, ଏ ଟଲା ତ ସ୍ୱରଗ ଅପସରାଙ୍କଠଉଁ ବେଶି ଶୋଭାବନ, ଗୁଲ, ଅମର ଯେ ନୂଆ ରଜା ହବ, ଯୁାକୁ ନେଇ ତାଙ୍କର ପାଟରାଣୀ କରିବା ।' ଯ୍ୟା କହୁ ସେ ଜେମାଦେଇକୁ ଟେକି ଟାକି ନେଇ ସେ ବୋଇତରେ

ବସେଇଲେ, ବୋଇତ ବାହି ଗଲେ ବାହାର । କେମା ବଗୃରଙ୍କ,
ମତେ ଖଣ୍ଡେ ତ ଧଇଲେଣି, ଇଲଗେ ତ ମତେ ଜୀବନରେ ମାରି
ପକାଇବେ, ମୋ ପିଲାଏ ନାବଖାର ହେଇ ଅନେକ ଅବସ୍ଥା
ପାଇବେ', ଯ୍ୱା ବଗୃରୁ ବଗୃରୁ କେମା ମୋହ ହେଇଗଲେ ।

ଏଣେ କଣ ହେଲା, ସେ ପିଲାଟି କୁଅଁ କୁଅଁ ହେଇ
ଭୋକରେ ଫୁଲୁକୁଟି ପଡ଼ ଡେଙ୍ଗ ଥାଏ, ବଡ଼ପୁଅର କାନଅତଡ଼ା
ପଡ଼ୁଥାଏ, ବଡ଼ପୁଅ ଗୁହିଁ ଗୁହିଁ ରୁମ ଲୁଚାଲା ବେଳ ଅସି ହେଲାଣି,
ମା କଅଁ ନ ଅଇଲା ! ଇମିତ ବଗୃରୁ ବଗୃରୁ ବାପ ମାଙ୍କୁ କାହ୍ନା
କରି କରି ହେଇ ଡକାବୋବାଳି ପକେଇଲା । ଦେଖିଲା
ବେଳକୁ ଏକ କାଳୀ ଗାଈ ଥିଲା, ସେ ବଣ ଭିତରୁ ବାହାରି
ପଡ଼ିଲା, ଅସି ଏ ଉଡ଼ଅଣି ପୁଅ ମୁହଁ ପାଖରେ ଚେର ଲଗେଇ
ହାମ୍ବଡ଼େଇ ଦେଲା । ପିଲାର ଭୋକରେ ଶୋଷରେ ଘଣ୍ଟିକା ଶୁଖି
ଯାଉଛି, ପୁଅ ପାଟିରେ ଚେର ବାଜିଲାକ୍ଷଣି ପୁଅ ମନ ଇଚ୍ଛା ଚଁଚଁ-
କରି ପେଟେ ଦୁଧ ପିଇଲା, ନିଶ୍ଚିନ୍ତ ହେଇ ରହିଲା । ଭାଇ ଭାଇ
ତ ଲୋଟର ଜୋଟର ହେଇ ଯାଇଥିଲେ, ଦଣ୍ଡେ ଖେଳିଛୁ, ନିଗଡ଼
ନିଦରେ ଶୋଇ ପଡ଼ିଲେ । ସେ ଗାଈ ଉଠି ଅସି ବଡ଼ପୁଅ ପାଖରେ
ମାଛୁଟିଏ ଭଳି ଠିଆ ହେଲା । ବଡ଼ପୁଅର ଭୋକରେ ହଂସା
ଉଡ଼ୁଥାଏ, ସେ ଗାଈ ଚେରରେ ମୁହଁ ଲଗାଇ ପେଟେ ଦୁଧ
ପିଇଲାରୁ ତା ଦେହରେ ଜୀବ ପଶିଲା । ସେ ଗାଈଟି ଏ ଦି'ପିଲାଙ୍କୁ
ଜଗି ସେଠେଇଁ ରାତଯାକ ଶୋଇ ରହିଲା । ସେ ଗାଈ ଏକ
ଗଉଡ଼ର ଯେ ସେ ବନସ୍ତକୁ ଚରିବାକୁ ଅସିଥିଲା, ଅଜ ଘରକୁ
ଲେଉଟିଲା ନାହିଁ । ବଣରେ ବାଘ ଖାଇଲା, କି ସାପ ଖାଇଲା,
ଯ୍ୱା ବଗୃରି ସେ ଗଉଡ଼ ଭାରି ବ୍ୟସ୍ତ ଥାଏ, ରାତଯାକ ଯ୍ୱା ବାଡ଼ି, ତା
ଗୋହିରି କେତେ ଅନିସା କଲା, ଗାଈର କିଛି ଓର ପାଇଲା ନାହିଁ ।
ସକାଳୁ ଯାଇ ବନସ୍ତଯାକ ଦରଣ୍ଡି ପକାଇଲା, ଯାଇ ଦେଖିଲା ବେଳକୁ

ସମୁଦ୍ର ପନ୍ତାରରେ ଗାଈ ଶୋଇଛି, ଏ ପିଲା ଦିଓଟି ତା
କୋଡ଼ରେ ଜାକିଜୁକି ହୋଇ ପଡ଼ିଛନ୍ତି । ସେ ଗଉଡ଼ ଅଣ୍ଟୁ କୁଡ଼ା,
ବିଚାରିଲା, 'ମତେ ତ ସହଜରେ ଷଠିଗୋସେଇଁ ପିଲାବାଲା ଦେଇ
ନାହାନ୍ତି, ଏ ପିଲା ଦିଓଟିଙ୍କି ନେଇ ଆପଣା ପୁଅ ପରି ପାଳିବି ।' ଏହା
କହି ସେ ପିଲା ଦିଓଟିଙ୍କି ନେଲା, ଗାଈକି ଅଡ଼େଇ ଅଡ଼େଇକା
ଘରକୁ ଗଲା; ଗଉଡୁଣୀକି କହିଲା, ଏପରି ଏପରି ସମାଚାର ।
ଗଉଡ଼ୁଣୀ ଏ ପିଲାଙ୍କୁ ଦେଖିଲାକ୍ଷଣି ରଙ୍କ ଶୋଠିନିଧି ପାଇଲା ପରି
ହେଲା । ସେ ପିଲା ଦିଓଟିଙ୍କି ଭାରି ଗେଲବସର କରି ହଳଦି
ମଥାଦିହୁ ଦେଇ ଦୁଧ ଘିଅ ଖୋଇ ବଢ଼େଇଲା । ପିଲାଏ ଖାଇ ପିଇ
ଅଲଅଳ ହୋଇ ବଢ଼ିଲେ, ଏଣେ ରଜା ଗାଦିରେ ବସିଲାରୁ
ବୋଇତଅନ୍ତୁ ଅଣି ରାଣୀଙ୍କି ରଜାଙ୍କ ଛାମୁରେ ପହଞ୍ଚେଇଲେ । ରଜା
ସମୁଦ୍ର ପନ୍ତାରକୁ ମଣିଷ ପଠେଇ ଦେଖିଲାବେଳକୁ ପିଲାପିଲା କେହି
ନାହାନ୍ତି । ବିଚାରିଲେ, 'ଅଜ ସତେ ପିଲା ଜାଇଛନ୍ତି ଯେ, ତାଙ୍କୁ ତ
ଏ ସମୁଦ୍ର ପନ୍ତାରରେ ବାଘ ଭାଲୁ କିଏ ଖାଇ ସାରିଲେଣି ।' ଏହା
କହି ରଜା ରାଣୀ କାନ୍ଦିଲେ, ବୋବେଇଲେ, ରହିଲେ ।

ରଜାଙ୍କର ଚିଲା ଦିହେଁ ଗଉଡ଼ ଘରେ ଖାଇ ପିଇ ବଢ଼ୁଥାଅନ୍ତି ।
ତାଙ୍କ ମୁଣ୍ଡକୁ ହାତ ପାଇଲାରୁ ଗଉଡ଼ର ଗୋରୁ ଗାଈ ଧନ୍ଦା ବୁହିଲେ ।
ସେ ଗଉଡ଼ଘରେ ନିତି ରଜାଙ୍କ ଘରକୁ ଦୁଧ ଲାଗଥା ଯେ, ସେ ନିତି
ଭାରେ ଓଖାର ଘିନି ରଜାଙ୍କ ନଅରକୁ ଯାଏ । ଦିନେ ଶିକା ବାହୁଙ୍ଗୀ
ସଜ କରି ଭାର ସଜାଡ଼ି ବାହାରନ୍ତି, ବଡ଼ପୁଅ କହିଲା, 'ବାପା, ମୁଁ
ତୋ ସାଙ୍ଗରେ ଯା'ନ୍ତି ରଜାଘରକୁ ।' ବାପ ମନା କଲା, 'ଅରେ ତୁ
ପିଲାଟେକ, ସେ ରଜାଘର କାରଖାନା, ତୁ କଅଁ ସିବୁ, କିଏ କଣ
କହିବ, କରିବ, ତୁ ଯାଅନା ।' ଏ ଟୋକା କହିଲା, 'ତୋର କୋଉଁ
ଧନ ଖଞ୍ଜ ଅଖଞ୍ଜ ହବ, ତୁ ଯାଇ ନ ପାରିବୁ କାଳେ, ମୁଁ ଅଗରୁ

ଯାଇ ରଜାଘର ଦେଖି ଆସିଥାଏଁ ଯେ, ତୁ ଯେଉଁ ଦିନ ନ ଯାଇ
ପାରିବୁ, ମୁଁ ଯାଇଁ ଦୁଧ ଭାତ ପହଞ୍ଚେଇ ଦେଇ ଆସିବି ।' ବାପ
ସାଙ୍ଗରେ ଯାଇ ରଜାଙ୍କ ନଅରରେ ପହଞ୍ଚିଲା । ବାଉଁଶସାଇରେ
ମାଣିକ ପଡ଼ିଲା ଭଳି ଗଉଡ଼ଘରେ ଏମନ୍ତ ସୁନ୍ଦର ପିଲା, ସମସ୍ତେ
ଦେଖି ଅଚମ୍ବିତ ହଉଥାନ୍ତି । ରଜା ସେ ପିଲାଟିକି ଦେଖି କେଜାଣି
କାହିଁକି ବାଇବୁଝା ପରି ହେଲେ । ତାଙ୍କ ମନ ଭାରି କଳେଇବାରୁ
ସେ- ଗଉଡ଼କୁ କହିଲେ,'ଅରେ କେତେହେଉପୁଅ, ତୋର ଏ ପୁଅଟି
ଆମ ଘରେ ଗୃହକର ରହିବ ?' ଗଉଡ଼ କହିଲା, 'ମଣିମା, ସେ
ପିଲାଲୋକ, ଅଜଯାକେ ତ ତାକୁ ଖୋଷଣି ମାରି ଆସି ନାହିଁ, ସେ
ମଣିମାଙ୍କ ପାଖରେ ଚଳି ପାରିବ ନାହିଁ ।' ରଜା କହିଲେ,' ଅରେ,
ଆମେ ତାକୁ ସବୁ କଥାରେ ସକ୍‌ବକ୍ ଚଳେଇ ନବୁ ଯେ !'ଗଉଡ଼
ଏ କଥା ଶୁଣି କାନ୍ଦ ପକେଇଲା । ଟୋକା କହିଲା, 'ବାପା, ତୁ
ଏଡ଼େ ହାଲିଆ ହଉଛୁ କିଆଁ ? ତୁ ତ ନିତିଦିନ ନଅରକୁ ଦୁଧଭାତ
ଘିନି ଆସିବୁ, ମତେ ଦେଖି ଯାଉଥିବୁ; ରଜା ତ କହିଲେଣି, ତାଙ୍କ
କଥା ଭାଙ୍ଗି ଦଉଛୁ କିଆଁ ?' ଗଉଡ଼ ଟେଛିକୁ 'ହଁ' ଭରିଲା । ନିତି ଭାତ
ଘିନି ଆସେ, ପୁଅର ଖବର ଅନ୍ତର ବୁଝିଯାଏ, ଘରେ ଯାଇ
ଗଉଡୁଣୀକି କହେ, ପୁଅର ଖବର ଦହପା କୁଶଳ ।

ଇମିତି କିଛି ଦିନ ଗଲାରୁ ସାନପୁଅ ଗଉଡ଼କୁ କହିଲା, 'ବାପା,
ମୁଁ ଅଜ୍ ଟିକିଏ ତୋ ସାଙ୍ଗରେ ଯାଆନ୍ତି କି ବଡ଼ଭାଇକି ସଙ୍ଗେଲି
ଆସନ୍ତି; ମୋ ମନ ଭାରି ଉଚ୍ଛନ୍ନ ହଉଛି ।' ଗଉଡ଼ କହିଲା, 'ଅର
ଭାଇ ତ ଗଲା ଯେ ତାକୁ ରଜା ସିଅଡ଼େ ରଖିଲେ; ତୁ ଗଲେ ଯେବେ
ସିଅଡ଼େ ରହିବୁ, ଅମେ ବାପ ମା ପିନା ଅନ୍ଧ ହେଇ ବୁଲିବୁଁ ? ହଉ,
ଚାଲ ।' ଯୀ କହିଲାରୁ ସାନପୁଅ ଗଉଡ଼ ସାଙ୍ଗେ ସାଙ୍ଗେ ଗଲା । ରଜା
ତାକୁ ଦେଖି ସିମିତି, ତାଙ୍କ ମନ ଅଥୟ ହେଲା ନାହିଁ । ରଜା ରାଣୀ

ଦଦ୍ୱେଇଁଯାକ ଏ ପିଲା ଦହିଁଙ୍କି ଦେଖିବାରୁ ଅପଣା ପୁଅଙ୍କୁ ସୁମରି କେତେ କାନ୍ଦଲେ, ତୁନି ହେଲେ । ଏ ବାହାରିଲା ବେଳକୁ ରଜା କହିଲେ, 'ଅଜ ଦିନକ ଏ ପୁଅ ଅମ ନଅରରେ ରହୁ, କାଲି ଯିବ ।' ଏ ସାନଟୋକା ବି କହିଲା, 'ବାପା, ମୁଁ ଅଜା ଭାଇ ପାଖରେ ରାତିକ ରହିବି, କାଲି ଯେତେବେଳେ ଦୁଧ ଘିନି ଅସିବୁ,ମୁଁ ତୋ ସାଙ୍ଗରେ ଘରକୁ ଯିବି ।' ଏ ଗଉଡ଼ କହିଲା, 'ହଉ, ତେବେ ଥା,' ଯା କହି ଗଉଡ଼ ଗଲା ତା ଘରକୁ । ଏ ଦଦ୍ୱେଇଁଯାକ ନଅରରେ ରହିଗଲେ । ରାଣୀଙ୍କର ଏ ଦି' ଭାଇଙ୍କ ଉପରେ ଭାରି ଶରଧା ହେଲା । ରାଣୀ ନିଜେ ହାତରେ ବାଢ଼ି କେତେ ଅପୂର୍ବ ପଦାର୍ଥମାନ ଏ ଦହିଙ୍କି ଖୋଇଲେ । ଅପଣା ପହଡ଼ ଘରପାଖ ବଖରାରେ ଏ ଦହିଙ୍କି ଶୁଆଇଲେ । ରାତିରେ ରଜା ରାଣୀ ଅପଣା ଦି' ପୁଅଙ୍କ କଥା ବାହୁନି କାନ୍ଦିଲେ, ଅଜ ଶୋଇ ନ ଥାନ୍ତି । ସେତିକି ବେଳକୁ ଅର ବଖରାରେ ଏ ଦି' ଭାଇ ଶୋଇଥିଲେ, ସାନ ଭାଇ କହିଲା, 'ଭାଇ, ମତେ ନିଦ ମାଡ଼ୁ ନାହିଁ, ତୁ ଗୋଟିଏ କଥା କହନୁ ।' ବଡ଼ ଭାଇ କହିଲା,'ସୁଖ କହିବି କି ଦୁଃଖ କହିବି, ଯାହା ଅଙ୍ଗେ ନିଭେଇଛୁ ତା କହିବି ?' ସାନ ଭାଇ କହିଲା,'ତୁ କେତେ ଦିନର ବୁଢ଼ା ଯେ, ଯାହା ଅଙ୍ଗେ ନିଭେଇଛୁ ତା କହିବୁ ?' ବଡ଼ ଭାଇ କହିଲା, 'ଅରେ, ପିଲା ହେଲେ କଣ ହବ ? ମୁଁ ଯେତେ ଯେତେ ଅନୁଭବ କରିଛି, ତା କଥା କହିଲେ ପୋଥିଏ ପାଠ ହବ ।' ସାନ ଭାଇ କହିଲା, 'କହ, କହ ।' ବଡ଼ ଭାଇ କହି ବସିଲା,'ଅରେ ଅମକୁ ସିନା ବାପା ପାଳିଛି, ଅମେ ଅମୁକ ରଜାର ନାତି, ଇମିତି ବାପ ମା ଅଛୁ ମୁଁ କୁହୁକମଣ୍ଡଳ ଚଢ଼େଇ ଉପରେ ଚଢ଼ି ସାତ ସମୁଦ୍ର ପାରି ହେଲା ବେଳକୁ ମା ଅମର ଦୁଃଖ ପାଇଲା । ଏପାରିରେ ଯିମିତି ଅସି ଓତୁରିଲୁଁ, ସିମିତି ତୁ ଜନମ ହେଲୁ । ବାପା ଗଲେ ଜାଲ ପେଇଁ,ସେ

ସିଅଡ଼େ, ଚଢ଼େଇ ଗଲ୍ଲ ନାଅଁ ସେଇଁ ସିଅଡ଼େ, ମା ଗଲ କନାପଣ୍ଠା ଧୋଇବା ପାଇଁ, ସେ ସିଅଡ଼େ । ଗୋଟିଏ କାଳୀ ଗାଈ ଆସି ଭଟେ ମଟେ ଦୁଧ ଦେଲ, ସ୍ତତ୍ୟାକ ଜଗି ରହିଲ । ସକାଳୁ ଗରୁଡ଼ ଆସି ଆମକୁ ନେଇ ପୁଅରାଜ ପାଲ ଆମକୁ ମଣିଷ କଲ ।' ରଜା ରାଣୀ ଦହେଁ-ଯାକ ପଲଙ୍କରୁ ଉଠି ଆସି ଦ'ପୁଅଙ୍କୁ କୁଣ୍ଢେଇ କରି କେତେ କାନ୍ଦଲେ, ତାଙ୍କୁ ନେଇ ଆପଣା ପଲଙ୍କରେ ବସେଇଲେ । ସକାଳୁ ପାଚ ମନ୍ତ୍ରୀ ଡକେଇ ଏ ସବୁ କଥା କହିରେ, ରହିଲେ । ତହୁଁ ଆଉ ଧନ ଗରୁଡ଼ ଅଇଲରୁ ତାଙ୍କୁ କେତେ ଧନ ଦରବ ଦେଲେ ।

ରଜା ପୁଅ ମାଇପଙ୍କୁ ଘିନ ଥାନ୍ତି, ଏଣେ ମନରେ ଭଲ ହେଉଥାନ୍ତି, ସମସ୍ତେ ତ ଯେ ଯୁଅଡ଼େ ହଜଥିଲେ ଭେଟ ହେଲେ, ସେ କୁହୁକମଣ୍ଡଳ ଚଢ଼େଇଟି ଆମର ଏତେ ଉପକାର କରଥିଲ, କୁଅଡ଼େ ଗଲ ? ସେ ତ କାହିଁ ଅଇଲ ନାହିଁ ? ଦନେ ରଜାପୁଅ ଦହେଁଯାକ ଯାଉଛନ୍ତି ପାହଧିକ, ବୁଢ଼ା କେଳାଟିଏ ମୁଣ୍ଡରେ କେଉଁଏ ପକ୍ଷୀ ଖୋସି ନାଳ ଧରି ଯାଉଥାଏ, ରଜାପୁଅଙ୍କୁ ଦେଖିଲାକ୍ଷଣି ଜୁହାରଲ ଯେତେବେଳେ କ ନା, ସେତକ ବେଳକୁ ତା ମୁଣ୍ଡରୁ କେଉଁଏ ପକ୍ଷୀ ଖସି ପଡ଼ିଲ । ସେ ପକ୍ଷିକି ବଡ଼ ରଜାପୁଅ ଚିହ୍ନିଲ ସେ କୁହୁକମଣ୍ଡଳ ଚଢ଼େଇର ଡେଣା ବୋଲି । କେଳାକୁ ପଚ୍ଚରଲ, 'ହଇରେ, ତୁ ଏ ଡେଣା କେଉଁଠୁ ଅଣିଲୁ ?' ସେ କେଳା କହିଲ, 'ମଣିମା, ସମୁଦ ପନ୍ତାରରେ ଗୋଟିଏ ବରଗଛ ଯେ, ତାର ମୂଳେ ଏ ଡେଣା ପଡ଼ିଥିଲ; ମୁଁ ପାଇଲିଣି ତାକୁ ପନ୍ଦର କୋଡ଼ିଏ ବରଷ ହେଲ । ସେ ଡେଣା ତଳେ ପଡ଼ିଲାକ୍ଷଣି ତ ଏଁ । ସେ ପକ୍ଷୀ ମୁଣ୍ଡରେ ଖୋସିଲେ ମୁଁ ଯୋଉଁ ଚଢ଼େଇକି ଇଚ୍ଛା, ସେ ଚଢ଼େଇକି ଲଖ କରବ, ସେ ଚଢ଼େଇ ଅଜ୍ଞ ଧରି ନ ପଡ଼ ନାହିଁ । ମୁଁ ସେଇଥି ଯୋଗରୁ ପେଟ ପୋଷୁଛି ।' ରଜାପୁଅ କହିଲ, 'ଆମେ ତୋ ମନ ବୋଧ କରଦେବା, ତୁ ସେ ଡେଣା

ଖଣ୍ଡିକ ଆମକୁ ଦେ ।' ଢେଙ୍କା କହିଲା, 'ହଉ, ମଣିମା ।' ରଜାପୁଅ ସେ ଡେଣାକୁ ନେଇ ବାପାଙ୍କ ପାଖରେ ଦେଖାଇଲାରୁ ବାପା କହିଲେ, 'ଅଚ୍ଛା, ପାଦୁକପାଣିରୁ ମୁନ୍ଦାଏ ଆଣି ଛୁଞ୍ଚ ଦେଲ ଭଲା!' ପାଦୁକପାଣି ମୁନ୍ଦାଏ ହରପାର୍ବତୀଙ୍କ ନାଁ ଧରି ଛୁଞ୍ଚ ଦେଲାରୁ ସେ ଚଢ଼େଇ ଜୀଇ ଉଠିଲା । ସମସ୍ତେ ମିଳି ଆନନ୍ଦରେ ରହିଲେ । ମୁଁ ଗଲାରୁ କଥା କହିଲେ ନାହିଁ ।



# କୋପେ ବର କି ତପେ ବର

ଏକ ଗାଁରେ ଏକ ମହାଦେବ ଥାଆନ୍ତି । ସେ ଗାଁରେ ଗୋଟିଏ ବାହ୍ମଣ ଅଛ କେହନ୍ତି ଯେ ସେ ଦହେଁଯାକ ଅଣ୍ଟୁକୁଡ଼ା, ଅସି ବୁଢ଼ା ହେଲେ, ଗଛରେ ଫଳ ଫଳିଲା ନାହିଁ । ଦହେଁଯାକ ମହାଦେବଙ୍କ ପାଖରେ ଅନୁସରଣ କରିଥାନ୍ତି, ଦିନାକେତେ ଅଧା ପଢ଼ିଲେ, ତାଙ୍କୁ ଅଙ୍କ କହୁ ଅଙ୍କ ହେଉ ନ ଥାଏ । ବାହ୍ମଣୀ ନିତ କଣ କରେ ନା, ଫୁଲ ବେଲପତ୍ରି ଗଇଣ ଜଅଗ୍ରଜଳ ମହାଦେବଙ୍କ ମୁଣ୍ଡରେ ଚଢ଼ାଏ, ନିତ ଗୋମୁଖୀରେ ଅଭିଷେକ କରେ । ମହାଦେବ ତା କଥା ଶୁଣୁ ନ ଥାନ୍ତି । ଦିନେ କେଉଁଠି ଯାଇଥିଲା ମାଛ ମାରି, ମାଛ ଟୋକେଇକ ଝାଙ୍ଗି ଉପରେ ମୁଣ୍ଡେଇଥାଏ, ମଦ ପିଇ ଅଖି ରଙ୍ଗ ଟହଟହ କରିଥାଏ, ଟଳମଟଳ ହୋଇ ଘରକୁ ଆସୁଥାଏ, ବାଟରେ ପଡ଼ିଲା ମହାଦେବଙ୍କ ଦେଉଳ । ଏ ତ ମଦ ଖାଇ ଚୁର୍, ମନେ ପଡ଼ିଗଲା ଅଧା ପଡିବା କଥା । ସେଇଥିରୁ ଦେଉଳ ଦୁଆରରେ ଠିଆ ହେଲା, କିଳକିଳା ପାଟି କରି ଉଠିଲା, 'ମହାପ୍ରଭୁ ! ଏତେ ଅନୁସରଣ କଲି ନ ଶୁଣିଲ, ହଉ ଏବେ ପଶୁରୁଛୁ, ମତେ ପୁଅ ଦବ, ନା ଏ ଟୋକେଇକ ବାଳିଆମାଛ ତୁମ ମୁଣ୍ଡରେ କୁଢ଼େଇବି ?' ଯା କହି ଦେଢ଼ା ଭିତରକୁ ପଶିଗଲା ବେଳକୁ ମହାଦେବ ବିଗୁଡ଼ିଲେ, 'କି ରେ, କଥା ତ ସଇଲା ! ଏ ତ ମଦ ନିଶାରେ ଭୋଳ ହୋଇଛି, ଯାକୁ କିଣ ବୁଝେଇଲେ ସମ୍ଭେଇଲେ ଏ ମାନିବ ? ଏଇଲାଗେ ତ ଆସି ମାଛ ଟୋକେଇକ ମୋ ମୁଣ୍ଡରେ ଭୁଷ୍ କରି ଅଜାଡ଼ି

ଦବ୍, ସବୁ ନ ମାଗି କରିବ ।’ ସ୍ତ୍ରୀ ବସ୍ତ୍ରର ଭିତରୁ ପାଟି କରି
କହିଲେ, ‘ଅରେ ଯା ଯା, ତୋର ସାତ ପୁଅ ହେବେ ।’ କେଉଟ କହିଲା
‘ଭଲ କରୁଛ ହଇ,’ ସ୍ତ୍ରୀ କହି ଘରେ ଆସି ପହଞ୍ଚିଲା । କେଉଟୁଣୀକି
କହିଲା, ‘ଅଲୋ, ଆଉ କାହିଁ ବସୁଛ ହଇଲୁ ? ଆମର ସାତ ପୁଅ
ହେବେ ।’ ଏ ବାହ୍ମଣ ନିତି ଯିମିତି ଆସେ, ସିମିତି ଆସି ତହିଁ ଅର
ଦିନ ଅଭିଷେକ କଲାବେଳକୁ ମହାଦେବ ସେ କପିଳାସ କନ୍ଦରରେ
ଢୋଳଉଥାନ୍ତି ! ପାର୍ବତୀ କହିଲେ, ‘ହଇ ହେ, ତୁମେ ଗୋଟିଏ
ଅଲକ୍ଷଣାଟିଏ, ସବୁ ଅବୁଝାମଣା କଥା ତୁମରଠେଇଁ ! ଏ ବାହ୍ମଣ
ନିତି ଆସି ଏତେ ଅନୁସରଣ କରୁଛି, ତୁମେ ବସି ଢୋଳଉଛ ।
କାଲି କେଉଟ ଆସି ମାଛ ଟୋକେଇକ ଅଜାଡ଼ିଲା ବୋଲି ତରହର
ତାକୁ ସାତ ପୁଅ ଦେଲ । ଅଜ କାଲି ପରି ଯୁଗ ହେଲାଣି ବାବା !
ଏ ବାହ୍ମଣ କଥା କିଛି ଶୁଣିବାକୁ ମନ ହଉ ନାହିଁ ?’ ମହାଦେବ
ପାର୍ବତୀଙ୍କ ଆଡ଼କୁ ତରାଟି କରି ଚାହିଁଲେ, କହିଲେ, ‘ଅଜ କାଲି ପରା
ମାଇପଙ୍କ କାଳ ହେଲାଣି, ମାଇପେ ଭାରି ଭଲ୍‌କପାଠ କଲେଣି ।
ଅଲୋ, ତୁମର ତ ଅବୁଝାମଣା କଥା, ଯାହା ଗହା ଧରିବ ସେଇଆ ।
ବାହ୍ମଣକୁ ବର ଦେଲି ନାହିଁ ବୋଲି ତ ଫଁ ଫଁ ହଉଛ, ଭଲା
ବୁଝନ୍ତ, କାହିଁକି ନ ଦେଲି ? ବୁଝିବ ନାହିଁ, ସମୁଝିବ ନାହିଁ, ଖାଲି
ହାଙ୍ଗଳା କଥାଗୁଡ଼ାଏ କହୁଥିବ, ଏଥିକି ଏବେ କିଏ ପାରେ ?’
ପାର୍ବତୀ କହିଲେ, ‘ହଗିଲା ବେଳକୁ ଲାଜ ନାହିଁ, କହିଲା ବେଳକୁ ଲାଜ
ଭଲଆ ଏ ନ୍ୟାୟ ହେଲା । ତୁମେ ଅବୁଝାମଣା ବସ୍ତୁର କଲାବେଳକୁ
ହାଡ଼ ଗଳିଲା ନାହିଁ, କଥା ପଦକେ ଋଷିଙ୍କ ବାଳ ଛିଣ୍ଡି ଯାଉଛି ।
ବାହ୍ମଣକୁ କାହିଁକି ଏତେ ସରକି ତ ହତହ ବାଳରେ ସନ୍ତୁଷ୍ଟ
କହିଲ ଭଲ !’ ମହାଦେବ କହିଲେ, ‘ଅଲେ, କେଉଟକୁ ସାତ ପୁଅ
ଦେଲି ଯେ, କିଏ ମାଛ ମାରି ଯିବ, କିଏ ଗୌର କରିବ, କିଏ ବାନ୍ଧ

ଯୋଗନାରେ ଯିବ, କଏ ଶବଦବବା ପିଣ୍ଡ ଭଳ ମାଗିବ, ତା ତପସ୍ୟାକୁ ଗୃହିଁ ତ ତା ପୁଅ ହେବେ ! ବାହ୍ମଣ କଥା ଯେ କହୁଛ, ବାହ୍ମଣଙ୍କୁ ତ ଇମିତ ସିମିତ ପୁଅ ଦେଲେ ଚଳିବ ନାହିଁ । ବ୍ରାହ୍ମଣ ତପସ୍ୟାକୁ ଗୃହିଁ ପୁଅ ହେଲେ ସିନା ତାଙ୍କୁ ପୁଅଟିଏ ଦେବ ! ତା କପାଳରେ ଯେଉଁ ପୁଅ ଲେଖା ଅଛୁ, ସେ ପୁଅଟି ଅଲେଇଖି ଜୀବ । ତାର ଜମା ବାର ବରଷ ଅୟୁଷ । ମୁଁ ଏବେ ତାଙ୍କୁ ଇମିତ ତଣ୍ଟିକଟା ପୁଅ ଦଉଛୁ କମିତ ? ସେଥିପାଇଁକି ମୁଁ ଦୋସନ୍ଧରେ ପଡ଼ି ଦହଗଞ୍ଜ ହଉଛୁ । ନଇଲେ ମୁହଁରେ କହୁବାକୁ କଣ ମୋ ପାଟି ଛୁଡ଼ି ଯାଇଥିଲ କି ?' ପାର୍ବତୀ କହୁଲେ, 'ଅମର କଣ ଗଲା, ତାଙ୍କୁ ପୁଅଟିଏ ଦିଅ, ତେଣିକି ତା କଥା ସେ ଜାଣେ, ଅମେ ତ ଏତେ କଥାକୁ ଲଗା ନୋହୁଁ ? ସେଣେ ଯେ ବାହ୍ମଣୀ ନିତ ତୁମକୁ କେତେ କାନ୍ଦୁଛି, କେତେ ଶମ୍ଭୁଛି । ତୁମେ ମିଣିପେ, ମାଇପଙ୍କ କଥା କାହୁଁ ଜାଣିବ ? ତୁମେ ଅଖି ବୁଜି ବସିଥିବ, ଏଣେ ଅମେ ସବୁ କଥା ଶମ୍ଭା ଶୁଣୁଥିବୁ ।' ମହାଦେବ କହୁଲେ, 'ହଉ ।' ସକାଳୁ ବାହ୍ମଣ ପାଣୀ ଧନ୍ନ ଗମ୍ଭୀରରେ ଗୋଡ଼ ଦେଲା ବେଳକୁ ତାଙ୍କୁ ଶୂନ୍ୟ ଶବଦ ହେଲା, 'ଯା, ତତେ ବର ମିଳିଲାଣି, ତୋର ପୁଅଟିଏ ହବ । ଏକା ହେଲେ କଣ ହବ, ତା ପରମାୟୁ ବାର ବରଷ । ବାର ବରଷ ପୂରିଲା ବାସି ଦିନ ତାଙ୍କୁ ଅଉ କେହୁ ଅଟକେଇ ରଖି ପାରିବେ ନାହିଁ । ଏଥିଉକ ତୁ ଜାଣୁ, ତୋ ପୁଅ ଜାଣେ ।' ବାହ୍ମଣ କହୁଲା, 'ସେ ତ ଭଲ ପଛ କଥା । ମୁଁ ଏତେଢ଼େ ଅମୁର୍ଛୁଁକ ହଉଛୁ, ଅଗ କର ପୁଅ ମୁହଁ ଦେଖେଁ ତ ।' ଯ୍ୟା କହୁ ବାହ୍ମଣ ଗଲା ତା ଘରକୁ । ଯାଇଁ ଘରଣୀଙ୍କି କହୁଲା । ଘରଣୀ ଏଣେ ପୁଅ ହବ ବୋଲି ବାର ବରଷ ହେଲା ମାଘ ମାସ ସୋମବାର, ବଡ଼ନାରାୟଣ ବ୍ରତ କରୁଥାଏ । ତା ବ୍ରତ ଅସି ପୂର୍ଣ୍ଣ ହେଲାରୁ ତାର ମାସ ଗଡ଼ିଲା । ମାସ

କେତେ ଦିନରୁ ପୋଖତା ହେଲା, ପୁଅଟିଏ ଜନମ ହେଲା । ବ୍ରାହ୍ମଣୀ ଏକୋଇଶାକୁ ମହାଯତ୍ନ କରି ପୋଥିପୂଜାଟି କଲା । ପୁଅକୁ ହଳଦି ତେଲ ଦେଇ ଭାରି ଗେଲବସରରେ ବଢ଼େଇଲା । ପୁଅ ଅଳିଅଳ ହୋଇ ବଢ଼ିଲା । ଗୁହାଳରେ ବାପ ନେଇ ଛାଡ଼ିଲା, ଗୁରୁ ଧନେ ଗୁରୁ ପାଠ ହାସଲ କଲା । ସାତ ବରଷ ପୂରିଲାରୁ ପୁଅ ବେକରେ ପଇତା ଖିଏ ପକେଇଲେ । ବ୍ରାହ୍ମଣିଆ ପାଠସାଠ, କର୍ମକର୍ମି ଜପ ତପ ସବୁ ଟୋକା ସାତ ମଙ୍ଗଳା ଭିତରେ ପାଣି ପରି ମାଡ଼ିଗଲା । ଯେ ଦେଖୁଥାଏ ସେ ଏ ଟୋକାର ବୁଦ୍ଧି ଦେଖି ଜିଭ କାମୁଡ଼ ପକଉଥାଏ । ପୁଅର ମହାଦେବଙ୍କଠେଇଁ ଭାରି ଭକତି । ଦଶ ବରଷ ହେବାରୁ ପୁଅକୁ ବାହା କରେଇବ ବୋଲି ବ୍ରାହ୍ମଣ କନ୍ୟା ଖୋଜେଇଲା । କେତେ ଜାତକ ଟିପଣା ପଢ଼େଇଲା, ତା ଭିତରୁ ଖଣ୍ଡିଏ ଟିପଣାରେ ରାଜଯୋଟକ ପଡ଼ିଲାରୁ ସେ ପାତ୍ରୀଟି ପାଇଁ ମହାପ୍ରସାଦ ନିର୍ବନ୍ଧ ହେଲା, ଦୁଇ ସମୁଧିଯାକ ମାଲି ଠେକା ଠେକି ହେଲେ ।

ସେ କନ୍ୟାଟି ବାପ ମାଆଙ୍କର ଗୋଟିଏ ପିଲା । ତା ମା ନିତି ରାତି ଅନ୍ଧାରୁଅରୁ ଉଠି ବାସି ଅଡ଼ତ କରି ବସେ । ଏଣେ ଝିଅଟି କଣ କରେ, ମାଟି ଗୋବରକାନାରେ ତୁଳସୀଚଉରା ପିଣ୍ଡିଟି ତଳପର୍ଯ୍ୟ କରି ଲିପାପୋଛା କରିଦିଏ । ଚଉରା ଚାରିପାଖଯାକ ନିର୍ମଳ କରି ଝୁଣ୍ଟିଣିରେ ଓଳେଇ ଦିଏ, ଗୋବରପାଣି ମୁନ୍ଦିଏ ଛିଞ୍ଚିଦିଏ । ବୃନ୍ଦାବତୀ ରାତି ଜାଙ୍ଗୁଲି ଜାଙ୍ଗୁଲି ହେଲା ବେଳକୁ ରାଇଜ ବୁଲି ବାହାରନ୍ତି ଯେ, ଯା' ଚଉରାଟି ଲିପାପୋଛା ହୋଇ ଭାରି ଯତନ ଦିଶୁଥାଏ, ସେଠେଇ ଦଣ୍ଡେ ବିଜେ ହୁଅନ୍ତି, ଗଲାବେଳକୁ ବର ଦେଇ ଯାନ୍ତି ଯେ, 'ଏ ତୁଳସୀଚଉରା ମୂଳ ଯେ ଓଳେଇଛି, ସେ ଅଇସୁଲକ୍ଷଣୀ ହୋଇଥାଉ ।' ଯା' କହୁ କହୁ ଉଭେଯାନ୍ତି । ଯେ ଗତ, ସେଇ ବ୍ରାହ୍ମଣପୁଅଟି ଏ କନ୍ୟାଟିକୁ ବାହା ହେଲା । ଗୁରୁଁ ଗୁରୁଁ ଅସି ବାର

ବରଷ ମୃତ୍ୟୁବାକୁ ଅଛୁ ପାଞ୍ଚ ସାତ ଦିନ ଅଛୁ, ବାପ ମା ମୁହଁ ଶୁଖେଇ ଦେଇ ଶଙ୍କିଥାନ୍ତି, ପୁଅ ଯେତେ ଖୋଳେଇ ପଚାରେ, ଏ କିଛି କହନ୍ତି ନାହିଁ, ବାଆଁ ରେଇ ଦିଅନ୍ତି। ଅଛୁ ଦି' ଦିନ ଅଛୁ, ବାପ ମା ଭାରି କଇଁ କଇଁ ହେଇ କାନ୍ଦିଲେ। ଏ ଟୋକା ପଚାରିଲା କହିଲା, 'ତୁମେ କାହିଁ କାନ୍ଦୁଛ, ମରମ ମତେ କହୁନାହଁ, ମୁଁ ଜୀବନ ହରେଇ ଦେବି।' ମା ବାପ କହିଲେ, 'ଗର୍ଣ୍ଣି ମୁଣ୍ଡ ଶୁଣିବୁ, କାଲି ଛୁଞ୍ଚ ପରଦିନ ତ ଅମକୁ ଅଥଳ ସମୁଦ୍ରରେ ଭସେଇ ଦେଇ ଯିବୁ !' ସ୍ୱା କହି ବାହୁନେଇ କାନ୍ଦ କାନ୍ଦ ଲୋତକ ଢୋଳଗ ହେଇଗଲେ। ଏ ଟୋକା କହିଲା, 'ଏଇ କଥା ତ, ଯାହା ତ ହବାର ହବ, ମୁଁ ଏକ ସୂତର ବତେଇ ଦିଉଛି, କର। ଦିନେ ତ ହେଲେ ମରିବି, ଜାଣି ପାରିଲି ମହାପ୍ରଭୁଙ୍କ ଚରଣରେ ପ୍ରାଣ ଛାଡ଼ୁ। କାଲି ସକାଳୁ ଗାଧୋଇ ପାଧୋଇ ଯିବା ମହାଦେବଙ୍କ ଦେଉଳକୁ; ସେଠେଇଁ ମୋ ଅୟୁଷ ଚିପି ଯିବାଯାଏ ଏକା ଧ୍ୟାନରେ ମହାଦେବଙ୍କ ଅଭିଷେକ କରୁଥିବି, ଦେଖିବି ମୋ କପାଳ। ତୁମେ ଏକା ସେଠେଇଁ ନେଇ ଟୋକେଇକ ଟୋକେଇ ଫୁଲ, ବେଲପତ୍ର, ମାଠିଆକୁ ମାଠିଆ ପାଣି, ମୋ ପାଖରେ ପହଞ୍ଚାଉଥିବ।'

ତହିଁ ଆରଦିନ ସକାଳୁ ଉଠି ଟୋକା ସ୍ନାହାନ ପ୍ରକାର କଲା, ସାମସେଇଟିଏ ଧରି ଲମ୍ବେ ଲମ୍ବେ ଦେଉଳକୁ ମୁହାଁଇଲା, ଯାଇ ପଶିଲା ଦିଅଙ୍କ ଗମ୍ଭୀର ଭିତରେ; ବସି ଅଭିଷେକ କରୁଥାଏ। ଏଣେ ଦିନେ ଗଲା, ଦି'ଦିନ ଗଲା, ଏ ଟୋକା ଅଜ ତା ଭିତରୁ ପଦାକୁ ବାହାରୁ ନ ଥାଏ। ସିଅଡ଼େ ଚିତ୍ରଗୁପ୍ତ ପାଞ୍ଜି ଫିଟେଇଲା ବେଳକୁ ବାହ୍ମଣ ଟୋକାର ବାର ବରଷ ପୂରି ଗଲାଣି। ଯମରାଜା ପଠେଇଲେ ଦୂତଙ୍କୁ, 'ଯାଅ, ଆଣ ସେ ବାହ୍ମଣ ପିଲାକୁ।' ଯମଦୂତ ଡେଙ୍ଗା ଡେଙ୍ଗା ଅର୍ଘାକଅଟାମାନ ପୁଞ୍ଜାଏ କ ପାଅଟା ଛନ୍ଦ ଦଉଡ଼ି ଘିନି ବାହାରିଲେ,

ବ୍ରାହ୍ମଣଘରେ ଦେଖିଲା ବେଳକୁ ସେ ଟୋକାର ଅନ୍ତ ମିଳିବାକୁ ନାହିଁ, ଖୋଜି ଖୋଜି ସୂକ୍ଷ୍ମକରେ ବୁଝିଲେ ଯେ ଟୋକା ପଶିଛି ଦେଉଳ ଭିତରେ । କେତେ ଘୋଡ଼େଇ ହେଲେ କି ଯମ ଛାଡ଼ିବ ଭଲେ ? ଯମଦୂତମାନେ ବିଗିଡ଼ିଲେ, 'ଚାଲ୍, ଦେଉଳ ଦୁଆରେ ଜଗିଥିବା, ଦେଖିବା ଦେଖି ସେ ଟୋକା କେତେ ପେଖନା ଖେଳିବ ? ଦେଉଳରୁ ବାହାରିଲା ବେଳକୁ ତାକୁ ପଛବୁହା କରି ବାନ୍ଧି ବାହାଦଣ୍ଡା କରି ଘୋଷାରି ନେଇ ଯିବା ।' ଯା କହି ଦେଉଳ ବାହାରେ ଜଗିଥାନ୍ତି । ମହାଦେବଙ୍କ ଚଉହଦାରେ ତ ଯମର ଅଧିକାର ନାହିଁ । ଯମଦୂତ ଭାରି ଅଡୁଆରେ ପଡ଼ିଲେ, ଟୋକା ନହମାଏ ପଦାକୁ ବାହାରିପଡ଼ୁଲେ ସିନା ଏ ଘଡ଼ିଘାଡ଼ିଆ କରି ଓଟାରି ନିଅନ୍ତେ, ସେ ତ ପଶିଛି ଗମ୍ଭୀର ଭିତରେ, ଯମଦୂତ ପାଇକଛୁଆ ମାରି ପାଦାରେ ବୁଲିଲେ ।

ବାଘୁଣି କି ଯାଏ,
ବାଆ କଲେ ବସା ଦୋହଲୁଥାଏ ।

ଯମଦୂତ ଯାଇ ପଛକୁ ଯମ ଆଗରେ ଗୁହାରି କଲେ, 'ମଣିମା, ଛୁର ଟୋକା ବଳଟେ ଆମକୁ ସାତ ତୁଠରେ ପାଣି ପେଇ ଛାଡ଼ିଲାଣି, ମଣିମା, ଇମିତି ଇମିତି ସମାଚାର ।' ଯମ ପଛକୁ ଅଯେ ମଇଁଷି ଉପରେ ପଲଣ ପକେଇ ଚଢ଼ି ବାହାରିଲେ । ଯାଇ ପହଞ୍ଚିଲେ ଦେଉଳ ପାଖରେ, ଟୋକା ତ ବସିଛି ଧ୍ୟାନରେ । ଏ ପଦାରେ ରଡ଼ି ପକଉଥାନ୍ତି, ସେ ଟୋକା କହେ, 'ରହ ହୋ । ମୋ ଅଭିଷେକ କଣି ଅଧାପନ୍ତରିଆ କରି ଛାଡ଼ିଯିବି ? ତୁମର ଯେବେ ଏତେ କସ୍ମତ ଅଛି, ତେବେ ମତେ ଉଠେଇ ନିଅ ନାହିଁ ? ମୁଁ ଜାଣୁ ଜାଣୁ ଅଧା କରି ଗଲେ ମୋର ଗୋହତ୍ୟା ବ୍ରହ୍ମହତ୍ୟା ପାପରେ ଭାଗୀ ହବ କିଏ ?' ଯମ କହୁଛି, 'ଟୋକାଟାଏ, ଗାଲ୍ ଚିପି ଦେଲେ ଜନମଦୁଧ ବାହାରି ପଡ଼ିବ, ତୋର ଫେର୍ ଏଡ଼େ ଗରବ, ଅମେ ଏତେ ସକ୍‌ସ୍ ଫାଟି-

ଫୁଟି ଗଲଣି, ତୁ ଟିକିଏ ଚଙ୍କିବାକୁ ନାହୁଁ ! ତୁ ତ ଦେଉଳରେ ପଶିଛୁ; ଠୋ ବଣଟେଇ ବଳାଅର, ଦଣ୍ଡକେ ସବୁ ରସ ନିକଳି ଯିବ ଯେ !' ଯମ ବଡ଼େ ବଡ଼େଇ ଖଟେଇ ହେଇ ଗଲେ ବାହାରି ।

ଏଣେ ମହାଦେବ ଯାଉଥିଲେ ବୁଲି, ସିଅଡ଼ୁ ଅସି ପହଞ୍ଚିଲା-ବେଳକୁ ଲାଗିଛି ଏ ନୃତ୍ୟ । ଏ ସବୁ କଥା ଦେଖି ମୁହଁଟା ଭୁରୁକୁଣ୍ଡା କରି ଘରକୁ ଗଲେ, ପାର୍ବତୀଙ୍କି କହିଲେ, 'ମାନୁ ନ ଥିଲି ପରା ? ବିରି ଅଟକାଳି ଖୋଇଛି ଯେ, ସ୍ୱର୍ଗରେ ହଗେଇ ନଜିଛି ସେ । ଏବେ ସମ୍ଭାଳ । ହଗିଲାବେଳ କଥା ଛଡ଼େଇ ହେଲାବେଳକୁ ଥାଏ କି ? ପୁଅ ଦେଲାବେଳକୁ କେତେ ନେହୁରା ହେଉଥିଲି, ଏତେ-ବେଳକୁ ଆମର ଟଣାଓଟରା ଲାଗିଛି । ସେତେବେଳକୁ କଥା କହୁଥିଲି ଯେ, ପାଟିରେ ବାଟୁଳି ବାଜୁ ନ ଥିଲା, ଏବେଳକୁ ପାଟିରେ କଣ ମଣ୍ଡା ପଶିଛି କି ? ତୁମେ ତ ନାଟର ଗୋବର୍ଦ୍ଧନ ।' ପାର୍ବତୀ କହିଲେ 'ମଲି, ଏମିତ କିଆଁ ଟାଉଁ ଟାଉଁ କରି କଥାଗୁଡ଼ାକ କହୁଛ ମ ? କାର୍ଯ୍ୟକୁ ବାହୁଡ଼ିଙ୍କ ଭଳି ବୁଲି ବୁଲି ଅସି ପହଞ୍ଚିଲେ, କାଣି ବିଲେଇ କୁଜା ଅସରପା ଉପରକୁ ହେଲା ଭଳିଆ ଅଜ ତ କାହାକୁ ପାଇଲେ ନାହିଁ, ବାମ୍ଭଣ ଟୋକା ଉପରେ ତାନ ବାହାର କରୁଛନ୍ତି । ତୁମେ ତ ଯିବ ଶୋଇବ, ତୁମର ଏତେ କଷ୍ଟରରେ ରୁଷ କିଆଁ ?' ମହାଦେବ ତୁନି ହେଇ ଗଲେ ।

ଏଣେ କଣ ହେଉଥାଏ ନା, ଯମ ଦେଉଳ ପାଖରୁ ଫେରି ଗଲାରୁ ଯାଇ ମହଞ୍ଚିଲେ ଇନ୍ଦ୍ରଙ୍କ ପାଖରେ । ଇନ୍ଦ୍ର ଦେଖିଲାକ୍ଷଣି କହିଲେ, 'କି ହୋ, ତୁମେ କୁଆଡ଼େ ?' ଯମଙ୍କ ସାଙ୍ଗରେ ଦୂତଯାକ ତ ଥାନ୍ତି, ଚିତ୍ରଗୁପ୍ତ ଥାନ୍ତି, ପଣ୍ଡା ମଙ୍ଗିତି ଥାଏ । ଯମ କହିଲେ, 'ନିଅ, ତୁମ ପାଞ୍ଜିପତ୍ର ନିଅ, ମୁଁ ତ ଅଜଯାଏ ସଜାଡ଼ି କଲି ଯେ ମୋ ନାଁ ଶୁଣି ପିମ୍ପୁଡ଼ିଠାରୁ ରଜା ପର୍ଯ୍ୟନ୍ତ ଡରରେ ଥରହର କମ୍ପୁଥିଲେ । ମୁଁ

ଦାଣ୍ଡକୁ ବାହାରିଲେ ଗର୍ଭିଣୀ ଗାଈ ବାଟ ଘୋଡ଼ି ଦାଉଥିଲା, ଅଜି ମୋ ଚାରିବରଷ ତପସ୍ୟା ଗୁଳୁଅପୋଡ଼ାରେ ଶେଷ ! ମୁଁ ଅଜି ଘର ବାହ୍ମୁଣଟୋକା ଗଣ୍ଡକୁ ତ ପାରିଲି ନାହିଁ, ଏଣିକି ଅଜ କଣ ମହତ ସାଇବାକୁ ରଜା ହେବ ?' ସ୍ୱା କହୁ ପାଞ୍ଜିବଡ଼ାକ ଇନ୍ଦ୍ରଙ୍କ ଅଡ଼କୁ ଫୋପାଡ଼ି ଦେଇ ଥକାମରା ହେଇ ବସିଗଲେ । ଇନ୍ଦ୍ର ପଗ୍ଚାରିଲେ, 'କି ହୋ, କଣ ?' ଚିତ୍ରଗୁପ୍ତ କହିଲେ, 'ଇମିତ, ଏକ ବାହ୍ମୁଣଟୋକାର ବାର ବରଷ ଅଜି ପୂରିଲା ଯେ ଯମଦୂତଙ୍କୁ ସେ ଭୁରୁଢ଼େଇ ଦେଲା, ଯମରଜାଙ୍କୁ ପାସଙ୍ଗରେ ପକେଇବାକୁ ନାହିଁ, ମହାଦେବଙ୍କ ଗମ୍ଭୀରରେ ପଶିଛି; ଯେ ଯାଉଛି, ତାକୁ ଠେଙ୍ଗି ଦଉଛି ।' ଇନ୍ଦ୍ର କହିଲେ, 'ଓହୋ ! କାଳ ତ ଅସି ଲଟାରେ ପଶିଲାଣି । ଗ୍ଲଲ, ଯିବା ବ୍ରହ୍ମାଙ୍କ ଘମ୍ବକୁ ।' ବ୍ରହ୍ମା ଏ କଥା ସବୁ ଶୁଣିଲେ, ଉଠେଇଲେ ମହାଦେବଙ୍କୁ । ମହାଦେବ ଢ଼ଳଢ଼ଳକା ଅସି ପହଞ୍ଚିଲେ । ବ୍ରହ୍ମା, ଇନ୍ଦ୍ର ଦହେଁ ତାଙ୍କୁ କହିଲେ, 'ଏ କେଉଁ କଣାପ, ତୁମ ଯୋଗୁଁ କଣ ଏ ସଂସାର ବୁଡ଼ିଯିବ !' ମହାଦେବ କହିଲେ, 'ଅରେ, ମତେ ମିନା ଦୋଷ ଦଉଛ, ମୋର ଗ୍ଲବା କଣ ? ମାଇପଙ୍କ ଦାଉରୁ ଏଣିକି ଅଉ ଦାଣ୍ଡରେ ମୁଣ୍ଡ ଟେକି ଗ୍ଲଲି ହବ ନାହିଁ । ଇମିତ ଇମିତ ସମାଗ୍ଲର ।' ସମସ୍ତେ ସାଙ୍ଗ ହୋଇ ବାହାରିଲେ ବିଷ୍ଣୁଙ୍କ ପାଖକୁ । ଏ ସବୁ ଯାଇ ବୈକୁଣ୍ଠରେ ପହଞ୍ଚିଲା ବେଳକୁ ଲକ୍ଷ୍ମୀ ସାଅନ୍ତାଣୀ ଏ ବିଗ୍ଲର ସବୁ ଜାଣି ସାରିଲେଣି । ବିଷ୍ଣୁ ବସିଥିଲେ ମଣୋହିରେ । ଖାଇ ସାରି ଅଁଚେଇଲେ, ଲକ୍ଷ୍ମୀ ବଡ଼ଅ ଦେଇ ପଣନ୍ତ କାନିକି ଦୋହଡ଼ି କରି କେକରେ ପକେଇ ଠିଆ ହେଲେ । ବିଷ୍ଣୁ କହିଲେ, 'କି ହୋ, ଅଜି ମୁହଁ ଶୁଖେଇଛ କାହିଁକି ?' ଲକ୍ଷ୍ମୀ କହିଲେ, 'ଯେବେ ଅଜି ମହତ ରଖିବ ତ କହିବି, ନଇଲେ ଅଉ କୋଉ ଗୁଣକୁ ମୁଁ ମୁହଁ ଦେଖେଇବି ? କାର ମହୁସ ଖାଇବି ।' ବିଷ୍ଣୁ କହିଲେ, 'କେଉଁ କଥା

କଅଁ କହଲ, ତୁମ କଥା ମୁଁ ଭଗି ପଏ କେଉଁ ପନ ? କଣ କହୁ ନାହିଁ ?' ଲକ୍ଷ୍ମୀ କହଲେ, 'ମୁଁ ନତ ସତରୁ ଉଠି ବୁଲ ଗଲବେଳେ ଗୋଟିଏ ବ୍ରାହ୍ମଣର ତୁଳସୀ ଚଉରମୂଳ ଲପାପୋଛା ହୋଇ ଗୋବରପାଣି ପଡ଼ଥାଏ ଯେ ମୁଁ ସେଠେଇଁ ଦଣ୍ଡେ ବସେଁ, ଅପିଲବେଳକୁ କହେଁ, ଯେ ଯାକୁ ଲପାପୋଛା କରଚ୍ଛୁ, ସେ ଅଇସୁଲକ୍ଷଣି ହୋଇଥାଉ । ସେ ବାହ୍ମଣର ଅଭିଅଡ଼ ଝିଅଟି ତାକୁ ଲିପିଥାଏ । ମୁଁ ତ ଇମିତ ବର ଦେଲି । ଏଣେ ଫେର ସେହୁ ଝିଅଟି ଗୋଟିଏ ବାହ୍ମଣପୁଅକୁ ବିଭା ହେଲା ଯେ, ତା ପରମାୟୁ ବାର ବରଷ । ତା ପରମାୟୁ ପୂରିଲାଣି, ବାଡ଼ଅପାଣି ପଡ଼ିବାର ତ ବରଷେ ପୂରି ନାହିଁ, ଅଜାଯାଏ ତ ଗଇଁଡାଳ ଫିଟି ନାହିଁ, ପୁଅଣିଘର ତ କାହିଁବୋଲ କାହିଁ, ସେ ଝିଅଟି ତ ବାଳୁତବିଧବା ହବ, ତେବେ ମୋ କଥା ତ ପାଣିରେ ଗାର ।' ଯା କହୁଁ କହୁଁ ମହାଲକ୍ଷ୍ମୀ କୋହୋଇଲେଇ କର ପକେଇଲେ । ବିଷ୍ଣୁ କହଲେ, 'ହଉ, ଯାଅ, ଏଥିପାଇଁ ଏତେ କାନ୍ଦିଲେଣି ? ସେ ଝିଅର କାଚ ଚଜା ହେଲେ ତ ନଷ୍ଟ ଯିବ ।' ଯା କହ ଦାଣ୍ଡକୁ ବାହାର ପଡ଼ିଲା ବେଳକୁ ତେତଶ-କୋଟି ଦେବତାଯାକ ପାଳଦଉଡ଼ି ଗୋଛାଏ ଲେଖାଏଁ ପକେଇ, ଡାନ୍ତରେ କୁଟା ଦେଇ ଦାଣ୍ଡରେ ଠିଆ ହେଇଛନ୍ତ । ଏ ତ ଅନ୍ତର୍ଯାମୀ ପୁରୁଷ, ସବୁ ଠଉରେଇ ସାରଲେଣି । କହଲେ 'ଓହୋ ! ଅଜ କାହା ମୁହିଁ ଗୃହୁଁ ଉଠିଥିଲି, ମୋର ଅଜ କ ଭାଗ୍ୟ ! ଅସ, ଅସ, ବସ ।' ଦେବତାଯାକ କହଲେ, 'ଅମ ଦେବତାପଣିଅ ଚୁଲିକି ଯାଉ, ତୁମ ରାଜ୍ୟ ଏଣିକି ତୁମେ ବୁଝ, ଅମେ ଗଙ୍ଗାସ୍ନାନ ଫଳ ପାଇଲୁଁ ଯେ ।' ବିଷ୍ଣୁ ପଚ୍ଚରଲେ, 'କଣ, କଣ ?' ନା ଇମିତ ଇମିତ କଥା । ଘର ଛୁଅ ବଳକେ ସେ ଯେବେ ଛେଡ଼ି ଦେଲା, ଅଉ ଅମେ ସବୁ ଥିଲେ କେତେ, ଗଲେ କେତେ ? ବିଷ୍ଣୁ କହଲେ, 'ଶବଗୃପ୍ତେ ! ଗାଞ୍ଜିବହାକ ଦେଲ, ଅମେ ଦେଖିବା ।' ଯା କହ ଗାଞ୍ଜିକ

ଗୃହିଁଲେ, ପଣ୍ଡକୁ ଟିକାଏ କପାଳରେ
ଦେଲେ, କହିଲେ, ଅରେ ମତେ ଏବେ ଟିକାଏ ଝାଲୁଝାଲୁଆ ଦ
ଶୁଏ ଅଛ ରେ, ମୋ ପ୍ରଚକ୍ଷୁଖଣ୍ଡ ଆଣିବଟି । ଘର ଭିତରକୁ ଟ
ପଶିଗଲେ ଚଷମା ଆଣିବାକୁ, ବସ୍ତୁ କଣ କଲେ, ଏଣେ ସ
ସାଙ୍ଗେ କଥାଭାଷା ହଉଥାନ୍ତି, ପାଞ୍ଜିବଡ଼ାକ ଧରିଥାନ୍ତି । କାଣି ଅ
ନଖମୁନରେ 'ବାର' ଡାହାଣ ପାଖରେ ଗୋଟିଏ ମୁଣ୍ଡିଆ ବୁ
ଦେଲେ । ଖାଲି ଅଖିରେ ଦେଖିଲାବେଳକୁ ଟିକାଏ ଝାପ୍ସାଝାପ୍ସା ଧ
ଥାଏ । ବସ୍ତୁ ପ୍ରଚକ୍ଷୁଖଣ୍ଡିକ ଆଖିରେ ଦେଲେ, ଦଣ୍ଡେ ଗୁମ ଖାଇଗ
କହିଲେ, କ ହୋ ! ମୁଁ ଜାଣିଥିଲି, ମତେ ଅବା ଏକା ଗୃଳଣା ଧ
ସ୍ୱା କହ ସମସ୍ତଙ୍କ ଆଡ଼କୁ ପ୍ରଚକ୍ଷୁଖଣ୍ଡିକ ବଢ଼େଇ ଦେଲେ ।
ଅଖିରେ ଦେଖିଲାବେଳକୁ 'ବାର' ପ୍ରଚକ୍ଷୁ ଦେଇ ଗୃହିଁଲାବେଳ
ଦିଶାଣଏ । ସମସ୍ତେ ଦେଖି ଭଭ କାମୁଡ଼ ପକେଇଲେ । ବସ୍ତୁ କହିଲେ,
ମୁଁ ସେଇଆ ପଗ୍ରୁରୁଚ, କହ, ବାହ୍ମଣ ପିଲାର ତ ଆୟୁଷ ପୂରିଲାଣି,
କତରୁ ଯୋଡ଼ ହଉଚ କାହିଁ । କାଲ ଅଧି କଣ ଓଲଟା ହେଲା ?
ହଇହୋ ଶଙ୍ଖଗୃପ୍ତେ ! ତୁମେ ତ ଇଲାଗେ ଗୋଟିଏ ବ୍ରହ୍ମହତ୍ୟା ଅପରାଧ
ମୁଣ୍ଡେଇ ଥିଲ ! ଇମିତ ଅନ୍ଧ ନଶାପ ହେଲେ ତ ମଅ ଲୋକେ କା
ହେଇ ମରିବେ ! ଯାଅ, ଫେର ଇମିତ ଘରହସାବ କଥା କରିବ ନା
ତୁମକୁ ଗୃଳଣା ଧଇଲାଣି, ଏ ପ୍ରଚକ୍ଷୁଖଣ୍ଡିକ ନଅ, ପାଞ୍ଜି ଦେଖିଲାବେ
ଏ ଖଣ୍ଡିକ ଆଖିରେ ଦେଇ ଏଣିକି ପଢ଼ିବ । ଏବେ ସମସ୍ତଙ୍କ ମୁହଁ
ମୁହଁରେ ମଲା । ବାହ୍ମଣପୁଅ ହେଣ୍ଡିଟାଏ ମାରି ଦେଉଳରୁ ବାହାରି
ପୁଅ ବୋହୂ ଦହେଁଯାକ ଚକୋଡ଼ି ବରଷ ବଞ୍ଚିଲେ, ବାଳଯାକ ଝୋଟ ଧ
ହେଲା, ନାକ ଅସି ତ... ... ଲାଗିଲା, ପୁଅ ନାତ ଅଣନାତ ଧିକ ସୁଖ
ଘରଦୁଆର କଲେ... ...ରୁ କଥା ନ କହିଲେ ।

---

U. S. Press, Cuttack.

# ପ୍ରଥମ ସଂସ୍କରଣର ଭୂମିକା ।

ସମସ୍ତ ଦେଶର ସାହିତ୍ୟ ଆଲୋଚନା କଲେ ଦେଖାଯିବ ଯେ
:tion ( ଗାଳଗଳ୍ପ ) ସାହିତ୍ୟର ଗୋଟିଏ ନିତାନ୍ତ ନଗଣ୍ୟ ଅଙ୍ଗ
ହ । ଗ୍ରୀସ, ଇଟାଲି, ପାରସ୍ୟ, ଇଂଲଣ୍ଡ ଓ ଜର୍ମାନୀ ଦେଶମାନଙ୍କର
ଚୟ ଏଥିର ଜ୍ୱଳନ୍ତ ଉଦାହରଣ । ପ୍ରତ୍ୟେକ ଇଂରାଜୀଭାଷାଭିଜ୍ଞ
ଙ୍କି Æsop's Fable ସହିତ ନିତାନ୍ତ ଅପରିଚିତ ନୁହନ୍ତି । ସାଙ୍କ-
ଛଳରେ କେତେକ ଜୀବଜନ୍ତୁଙ୍କ କଥୋପକଥନ ଓ ବ୍ୟବହାର
ପୁସ୍ତକରେ ସନ୍ନିବେଶିତ ହୋଇଅଛି । ଭାରତର ପ୍ରାଚୀନ
ତ୍ୟରେ ବେତାଳପଞ୍ଚବିଂଶତି, ଦ୍ୱାତ୍ରିଂଶତ୍‌ସିଂହାସନ ଓ ହିତୋପଦେଶରେ
ଏହିପରି କେତେକ ନୀତିଗର୍ଭ ଗଳ୍ପ ସନ୍ନିବେଶିତ ହୋଇଅଛି । କିନ୍ତୁ
ନ ସ୍ୱଳ୍ପବୁଦ୍ଧି ବାଳକବାଳିକାମାନଙ୍କର ସହଜରେ ବୋଧଗମ୍ୟ
ାର ନୁହଇ । କାରଣ ଏଥିରେ କଳ୍ପନାଶକ୍ତିର ବିଶେଷ ପରିଚାଳନା
ପରିଚାଳିତ କଳ୍ପନାଶକ୍ତିର ମାଧୁର୍ଯ୍ୟ ଉପଲବ୍ଧି ଅବଶ୍ୟମ୍ଭାବୀ ହୋଇ
। ଯାହାହେଉ, ଶୁଷ୍କ ନୀତିଶିକ୍ଷାକୁ ସରସ କରିବା ଉପରୋକ୍ତ
ମାନଙ୍କର ପ୍ରଧାନ ଉଦ୍ଦେଶ୍ୟ ମଧ୍ୟରେ ପରିଗଣିତ । ସୁକୁମାରମତି
ବାଳିକାମାନଙ୍କୁ ଶିକ୍ଷାଦେବା ଓ ସଙ୍ଗେ ସଙ୍ଗେ ଚିତ୍ତାକର୍ଷଣ କରିବା
ପୁସ୍ତକମାନଙ୍କର ଲକ୍ଷ୍ୟ; କିନ୍ତୁ ଶିକ୍ଷଣୀୟ ବିଷୟ ସର୍ବତୋଭାବରେ
ର୍ଥକ ହେବା ସର୍ବଦା ଆଶା କରାଯାଇ ନ ପାରେ । ଇଂଲଣ୍ଡର
:sury Tales(ଧାର୍ମ୍ମାଳୟଯାତ୍ରି ଗଳ୍ପନିଚୟ)ଯେପରି ନିତାନ୍ତ ଅଳ୍ପ
ର ବାଳକବାଳିକାମାନଙ୍କର ଉପଯୋଗୀ ବୋଧ ହୁଏ, ତଦ୍ରୂପ

ସ୍ୱଳ୍ପବୟସ୍କ ବାଳକବାଳିକାମାନଙ୍କ ମନୋମୁଗ୍ଧକର ଗଳ୍ପ ପ୍ରତ୍ୟେକ ଦେଶର ସାହିତ୍ୟରେ ରହିଅଛି । ବଙ୍ଗଳାର ଖ୍ୟାତନାମା ଲେଖକ ଶ୍ରୀଯୁକ୍ତ ଲାଲବିହାରୀ ଦେ କିଛିକାଳ ପୂର୍ବେ ବଙ୍ଗଦେଶପ୍ରଚଳିତ କାହାଣୀମାନଙ୍କୁ ଇଂରାଜୀ ଭାଷାରେ ପ୍ରକାଶ କରିଥିଲେ । ଉକ୍ତ ପୁସ୍ତକର ଅଧିକାଂଶ ଗଳ୍ପ ବର୍ତ୍ତମାନ ଉତ୍କଳର ଅନେକ ପିତାମହୀ ଓ ପ୍ରପିତାମହୀଙ୍କର ପ୍ରଧାନ ସମ୍ବଳ । ସ୍ଥାନବିଶେଷରେ ଅଧିବାସୀମାନଙ୍କ ରୁଚିର ପାର୍ଥକ୍ୟ ଅନୁସାରେ ଏକ ଗଳ୍ପ ବିଭାଗ ବିଶେଷରେ ପରିବର୍ତ୍ତିତ, ପରିମାର୍ଜ୍ଜିତ, ପରିବର୍ଦ୍ଧିତ ବା କର୍ତ୍ତିତ ହୋଇ ଭିନ୍ନ ଭିନ୍ନ ରୂପ ଓ ଅବୟବ ଧାରଣ କରିଅଛି । ଉତ୍କଳଦେଶର ଏକ ଅଂଶରେ ବର୍ଷୀୟସୀମାନଙ୍କ ମୁଖରୁ ଯେଉଁ ଗଳ୍ପଟି ଶୁଣାଯିବ, ତାହା ଅନ୍ୟ ଅଂଶରେ ପ୍ରଚଳିତ ଗଳ୍ପଠାରୁ ଅନେକ କେତେକ ପରିମାଣରେ ବିଭିନ୍ନ ଏଥିରେ ସନ୍ଦେହ ନାହିଁ । କେହି କେହି ଏପରି ମନେ କରି ପାରନ୍ତି ଯେ କ୍ଷୁଦ୍ରବୁଦ୍ଧି ବାଳକବାଳିକାମାନଙ୍କ ନିମନ୍ତେ କଳ୍ପିତ କାହାଣୀମାନ ସାହିତ୍ୟର ଅଙ୍ଗ ବୋଲି କିପରି ବିବେଚିତ ହେବ ? ଏହାର ଉତ୍ତରରେ ଏତିକି ମାତ୍ର କୁହାଯାଇ ପାରେ ଯେ, ଦେଶପ୍ରଚଳିତ କାହାଣୀମାନ ଦେଶବିଶେଷର ରୁଚିର ପରିମାପକ ଅଟେ ଏବଂ ଏହି ବାଳଯୋଗ୍ୟ କାହାଣୀମାନ କେତେକ ଏକତ୍ରିତ କରି ସେମାନଙ୍କୁ ମନୋଯୋଗପୂର୍ବକ ପର୍ଯ୍ୟାଲୋଚନା କଲେ ଦେଶୀୟ ସାହିତ୍ୟର ଭଙ୍ଗୀ କେତେକ ଅଂଶରେ ପ୍ରକାଶିତ ହେବ, ଏଥିରେ ଆଉ ସନ୍ଦେହ କଣ ? ଦେଶୀୟ ସାହିତ୍ୟର ଉନ୍ନତି କରିବାକୁ ହେଲେ ପ୍ରାଚୀନ ଓ ଅଧୁନାତନ ଆଚାର, ବ୍ୟବହାର, ରୁଚି, ନୀତି, କଳ୍ପନାଶକ୍ତିର ପରିଚୟ ଜ୍ଞାତ ହେବା ସର୍ବତୋଭାବରେ ଶ୍ରେୟସ୍କର, କାରଣ ତାହା ନ କଲେ ସାହିତ୍ୟର ଇତିହାସ ସର୍ବତୋଭାବରେ ହୃଦୟଙ୍ଗମ କରିବା ଏକାନ୍ତ ଅସାଧ୍ୟ ହୋଇ ଉଠେ । ଅତଏବ ଯେଉଁ ଉପାୟରେ ପୁରାତନ ବା ଅଧୁନାତନ ରୁଚି ବା କଳ୍ପନାଶକ୍ତିର ପରିଚାଳନ (ଯେତିକି ହେଉ ପଛକେ) ଜଣା ଯିବ, ସେଥିରେ ପରିଶ୍ରମ ଯେ ସାହିତ୍ୟ ପ୍ରତି ବୃଥା ଶ୍ରମ, ଏହା ବା କିପରି ବୋଲାଯିବ ?

କାହାଣୀଗୁଡ଼ିକ ବାଳକବାଳିକାମାନଙ୍କ ମନୋରଞ୍ଜନ କରିବା ଉଦ୍ଦେଶ୍ୟରେ ରଚିତ ବା କଳ୍ପିତ, ଏଥିରେ ମତଦ୍ୱୈଧ ହୋଇ ନ ପାରେ । କିନ୍ତୁ ଏହା ସଙ୍ଗରେ ସ୍ୱୀକାର କରିବାକୁ ହେବ ଯେ ବାଳକ-ବାଳିକାମାନେ ଏହାର ଉଦ୍ଭାବକ ନୁହନ୍ତି । ଏହା ପ୍ରାପ୍ତବୟସ୍କମାନଙ୍କର କପୋଳକଳ୍ପିତ, କିନ୍ତୁ ବିଶେଷତଃ ବୃଦ୍ଧାମାନଙ୍କ ମୁଖରୁ ଏ ଗଳ୍ପମାନ ଶୁଣାଯାଏ ଓ ଏହି ବର୍ଷୀୟସୀମାନେ ଏହି କାହାଣୀମାନଙ୍କର ଉଦ୍ଭାବକ ବୋଲି ଅମ୍ଭମାନଙ୍କର ଏକାନ୍ତ ପ୍ରତୀତ ହେଉଅଛି ।

ପରମ୍ପରାକ୍ରମେ ବୁଢ଼ୀମା, ଆଈମା ଓ ଗ୍ରାମର ଅନ୍ୟାନ୍ୟ ବୃଦ୍ଧମାନେ ସନ୍ଧ୍ୟା ସମୟରେ ଏକତ୍ରିତ ଓ ଏକାନ୍ତଚିତ୍ତରେ ଅବସ୍ଥିତ ବାଳକ-ବାଳିକାମାନଙ୍କ ନିକଟରେ ଏ ଗଳ୍ପସବୁ କହି ଆସୁଅଛନ୍ତି । ମାତ୍ର ଏହି ଗଳ୍ପମାନଙ୍କର ଉଦ୍ଭାବନ ବିଷୟରେ କଳ୍ପନାଶକ୍ତିର ନିତାନ୍ତ ଅଳ୍ପ ପରି-ଚାଳନା ହୋଇଅଛି, ଏହା ସମସ୍ତେ ଉପଲବ୍ଧି କରୁଥିବେ । ପରିଶେଷରେ ସ୍ୱଭାବସୁଲଭ ଚପଳ କାର୍ଯ୍ୟମାନଙ୍କରୁ ବାଳକବାଳିକାମାନଙ୍କୁ ଭୁଲାଇ ନିଶ୍ଚଳଭାବରେ ରଖାଇବା ଏକାନ୍ତ ଆବଶ୍ୟକ ହୋଇ ଉଠେ ଓ ଅନ୍ତତଃ ଅମ୍ଭମାନଙ୍କ ଦେଶରେ ଏ କାର୍ଯ୍ୟ ଗୃହର ବୃଦ୍ଧାମାନଙ୍କ ଉପରେ ପଡ଼େ । ସେମାନେ ଏଥିର ଉପାୟ ଉଦ୍ଭାବନ କରିବାକୁ ଯାଇ ନିଜ ସ୍ୱଳ୍ପଶକ୍ତି କଳ୍ପନା ପ୍ରସାଦରୁ ଏ କାହାଣୀମାନ ଉଦ୍ଭାବନ କରିଅଛନ୍ତି, ଏହା ଅମ୍ଭେମାନେ ସ୍ଥିର କରୁଁ ।

ତାହା ବୋଲି ଯେ ଏହି ଗଳ୍ପମାନଙ୍କରୁ କିଛି ସାରବସ୍ତୁ ଉପଲବ୍ଧ ନ ହେବ, ଏମନ୍ତ ନୁହେ । ବାଲ୍ୟୋପଯୋଗୀ କାହାଣୀମାନଙ୍କରେ କେବଳ ଯେ କଳ୍ପନାଶକ୍ତି ପରିଚାଳିତ ହୋଇଅଛି, ତାହା ନୁହେ, ଏଥିରେ ଆଉ କିଛି ବିଶେଷତ୍ୱ ଅଛି । କାହାଣୀମାନ ଯେପରି ବାଳକ-ବାଳିକାମାନଙ୍କର ଚିତ୍ତାକର୍ଷକ ଓ ସଦ୍ଭାବ ବୁଦ୍ଧିବ୍ୟଞ୍ଜକ ହେବ, ଏଥିପାଇଁ ବାଳକବାଳିକାମାନଙ୍କର ଅତି କ୍ଷୁଦ୍ର କଳ୍ପନାଶକ୍ତିର ବେଗ ସଙ୍ଗେ

ଏମାନେ ପରିଧାବିତ ହେବା ଏକାନ୍ତ ଅବଶ୍ୟକ । ଏଥିରେ ଅବଶ୍ୟ କୁତୂହଳ ଅଛି; କାରଣ ବାଳକବାଳିକାମାନଙ୍କର ହୃଦୟର ଓ ବୋଧଶକ୍ତିର ଗମ୍ଭୀରତା ନିରୂପଣ କରି ତଦୁପଯୋଗୀ ଗାଳଗଳ୍ପସମୂହ ଉଦ୍ଭାବନ କରିବା କୌଶଳସାପେକ୍ଷ । ଅତଏବ ଅମ୍ଭେମାନେ ସିଦ୍ଧାନ୍ତ କଲୁଁ ଯେ ଏପରି ଗଳ୍ପମାନ ଯେଉଁମାନଙ୍କ କପୋଳକଳ୍ପିତ, ସେମାନେ ବିଚକ୍ଷଣ ଅତଏବ ଧନ୍ୟ ।

ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତାର ବୃଦ୍ଧି ସଙ୍ଗେ ସଙ୍ଗେ ଅମ୍ଭମାନଙ୍କ ଦେଶପ୍ରଚଳିତ କାହାଣୀମାନ ପ୍ରକାଶିତ କିମ୍ବା ଲିପିବଦ୍ଧ ହୋଇ ନ ରହିଲେ ଶୀଘ୍ର ଲୋପ ପାଇଯିବ, ଏପରି ଭୟ ହୁଏ । କାରଣ କ୍ରମଶଃ ପାଶ୍ଚାତ୍ୟ କାହାଣୀମାନ ଏ ଦେଶର କାହାଣୀମାନଙ୍କ ସ୍ଥାନ ଅଧିକାର କରିବ, ପାଶ୍ଚାତ୍ୟ ସଭ୍ୟତାର ବୃଦ୍ଧି ସଙ୍ଗେ ସଙ୍ଗେ ଲୋକମାନଙ୍କର ଓ ବାଳକବାଳିକାମାନଙ୍କର ରୁଚି କ୍ରମଶଃ ପ୍ରାଚ୍ୟ ରୁଚିଠାରୁ ବିଭିନ୍ନ ହୋଇଯିବ, କାରଣ ବାଳକବାଳିକାମାନଙ୍କ ରୁଚି ଦେଶ-ପ୍ରଚଳିତ ରୁଚିର କେତେକ ଅଂଶରେ ପରିମାପକ ଅଟେ । ଅତଏବ ଦେଶପ୍ରଚଳିତ କାହାଣୀମାନ କପଟ ବିନଷ୍ଟ ନ ହୋଇ ଲିପିବଦ୍ଧ ହୋଇ ସାହିତ୍ୟ-ଭଣ୍ଡାରରେ ସୁରକ୍ଷିତ ହେବ, ଏହା ସାହିତ୍ୟଯୋଦ୍ଧା-ମାନଙ୍କର ଗୋଟିଏ ପ୍ରଧାନ ଉଦ୍ଦେଶ୍ୟ ମଧ୍ୟରେ ପରିଗଣିତ ହେବା ଉଚିତ ।

ମୋହର ସ୍ୱୀୟ ଅନୁଭବରୁ ମୁଁ ବୁଝି ପାରିଅଛି ଯେ ମୁଁ ବାଲ୍ୟକାଳରେ ଯେତେ କାହାଣୀ ଶୁଣିଥିଲି ଓ ସ୍ମରଣ ରଖିଥିଲି, ବର୍ତ୍ତମାନ ମୋହର ଅଳ୍ପ-ବୟସ୍କ ବନ୍ଧୁମାନେ ସେଥିର ଅର୍ଦ୍ଧେକ ସୁଦ୍ଧା ଜାଣି ନାହାନ୍ତି ଓ ଯେଉଁ-ମାନଙ୍କଠାରୁ ମୁଁ ଏମାନ ଶୁଣିଥିଲି, ସେମାନଙ୍କୁ କେତେକ ଅର୍ଦ୍ଧବିସ୍ମୃତ କାହାଣୀମାନଙ୍କ ବିଷୟ ଜିଜ୍ଞାସା କଲେ, ସେମାନେ ଅଭ୍ୟାସବଶତଃ ଅନେକ କାହାଣୀ ଆଂଶିକ ଭୁଲି ଯାଇଥିବାର ପ୍ରକାଶ କରନ୍ତି । ଏଥିରୁ କଣ ସ୍ପଷ୍ଟ ପ୍ରତୀୟମାନ ହେବ ନାହିଁ ଯେ ମୋର ବାଲ୍ୟକାଳର

ବାଳକମାନଙ୍କ ଅପେକ୍ଷା ଅଧୁନାତନ ବାଳକମାନଙ୍କର କାହାଣୀ ଶୁଣିବାର ଉତ୍କଣ୍ଠା କ୍ଷୀଣତର ହୋଇଅଛି ? ମୁଁ ବାଲ୍ୟକାଳରେ ମୋହର ପିତାମହୀ ପିତାମହସ୍ୱସା ଓ ଜେଠେଇଙ୍କଠାରୁ ଅନେକ କାହାଣୀ ଶୁଣିଥିଲି । ଆହା ! ସେ ଦିନ ମନେ ପଡ଼ିଲେ ହୃଦୟର ଅନ୍ତରତମ ପ୍ରଦେଶ ଆନନ୍ଦରେ ନାଚି ଉଠେ । ସନ୍ଧ୍ୟା ହେଲେ କେତେ ଆଗ୍ରହ ସହକାରେ 'ଘର'ର ବାଳକବାଳିକାମାନଙ୍କ ସମଭିବ୍ୟାହାରରେ ବୁଢ଼ୀ ମା ଓ ଜେଠେଇଙ୍କର ଆଗମନ ସତୃଷ୍ଣନୟନରେ ପ୍ରତୀକ୍ଷା କରୁଥାଉ । ସେମାନଙ୍କ ନିକଟବର୍ତ୍ତୀ ସ୍ଥାନରେ ବସିବାକୁ ସୁବିଧା ମିଳିଲେ ସେ ଦିନ ନିଜକୁ କୃତକୃତ୍ୟ ମଣୁଥାଉଁ । ଗୋଟିଏ ଗୋଟିଏ ଭୂତ ଓ ରାକ୍ଷସୀର ଗଳ୍ପ ଶୁଣି ଆମ୍ଭେମାନେ ଏତେଦୂର ଭୟବିହ୍ୱଳ ହେଉଁ ଯେ ଦିନେ ଦିନେ ରାତ୍ରରେ ଆମ୍ଭେମାନେ ନିଦ୍ରାସୁଖରୁ ବଞ୍ଚିତ ହେଉଁ ଓ କଳ୍ପନା ଦେବୀ ଆମ୍ଭମାନଙ୍କୁ ସ୍ୱପ୍ନରେ ଏକାକୀ ଦେଖି ତାଙ୍କର ଅଭିନବ ଚିତ୍ରନୈପୁଣ୍ୟ ପ୍ରକାଶ କରନ୍ତି ।

ଆଉ ଗୋଟିଏ କଥା ଏଠାରେ ଅବଧାରଣା କରିବା ଆବଶ୍ୟକ — ଆମ୍ଭମାନଙ୍କ ଦେଶରେ ଓ ବିଶେଷତଃ ସ୍ତ୍ରୀମାନଙ୍କ ମଧ୍ୟରେ ରୁଚି ନିତାନ୍ତ ପରିମାର୍ଜ୍ଜିତ ନୁହେ । ଏପରି ସ୍ଥଳରେ କାହାଣୀମାନ ଯେପରି ଭାବରେ ବୁଢ଼ୀମାନଙ୍କ ମୁଖରୁ ଶୁଣାଯାଏ, ସେମାନ ଅବିକଳ ଲିପିବଦ୍ଧ କଲେ ତାହା ପରିମାର୍ଜ୍ଜିତ ରୁଚିର ବିରୁଦ୍ଧ ହୋଇ ଉଠିବାର ସମ୍ଭବ, କିନ୍ତୁ ଉକ୍ତ ଗଳ୍ପମାନ ପରିମାର୍ଜ୍ଜିତ କରିବାକୁ ଗଲେ କାହାଣୀମାନଙ୍କର ଅକୃତ୍ରିମ ମନୋହାରିତ୍ୱ ଓ ସରସତାରେ ବାଧା ପଡ଼େ । ଅତଏବ ଏହା ଗୋଟିଏ ଗୁରୁତର ପ୍ରଶ୍ନ । ଏହାର ମୀମାଂସା ସତନ୍ତ୍ର ଅନୁଶୀଳନସାପେକ୍ଷ । ବର୍ତ୍ତମାନ ଦେଖାଯାଉ, ଆମ୍ଭେମାନେ ଏ ଜଟିଳ ବିଷୟ ମୀମାଂସା କରିବାରେ କେତେଦୂର ସମର୍ଥ ହେବୁଁ ।

ପୂର୍ବେ ଆମ୍ଭେମାନେ ଦେଖାଇଅଛୁଁ ଯେ ଦେଶପ୍ରଚଳିତ କାହାଣୀମାନ

ଦେଶପ୍ରଚଳିତ ରୁଚିର ପରିମାପକ ଅଟେ ଓ ଏମାନ ପ୍ରକାଶ କରିବା-
ଦ୍ୱାରା ଦେଶପ୍ରଚଳିତ ରୁଚିର ମାର୍ଗ ସ୍ୱଚ୍ଛନ୍ଦରେ ବୋଧଗମ୍ୟ ହେଲେ
ଦେଶୀୟ ସାହିତ୍ୟର କିୟଦଂଶରେ ଉପକାର ସାଧିତ ହେବ । କିନ୍ତୁ
ବର୍ତ୍ତମାନ ଦେଖାଗଲା ଯେ ଅମ୍ଭମାନଙ୍କ ଦେଶପ୍ରଚଳିତ କାହାଣୀମାନ
ପ୍ରକାଶ କରିବା ପୂର୍ବରୁ ସେମାନଙ୍କୁ ମାର୍ଜିତ କରିବା ଏକାନ୍ତ
ଆବଶ୍ୟକ; କିନ୍ତୁ ମାର୍ଜିତ କରିବାକୁ ଗଲେ ଅମ୍ଭମାନଙ୍କର ପ୍ରଥମ
ଉଦ୍ଦେଶ୍ୟ ନଷ୍ଟ ପ୍ରାୟ ହୁଏ । ଏପରି ସ୍ଥଳରେ ଅମ୍ଭମାନଙ୍କର କର୍ତ୍ତବ୍ୟ
ଯେ ନିତାନ୍ତ ଅପରିମାର୍ଜିତ ରୁଚିସିଦ୍ଧ ଅଂଶମାନ ପରିବର୍ତ୍ତନ କରି ଲୋକ-
ମାନଙ୍କର ଗ୍ରାମ୍ୟ ମଧୁରତା ରକ୍ଷା କରି, କାହାଣୀମାନଙ୍କ ମୁଖ୍ୟ ଲକ୍ଷ୍ୟକୁ
ଦୃଷ୍ଟି ପରି ରଖି ଉକ୍ତ କାହାଣୀମାନଙ୍କୁ ପ୍ରକାଶ କରିବା । କିନ୍ତୁ ଏଥିରେ
ବିଶେଷ କୃତିତ୍ୱ ଆବଶ୍ୟକ । କେଉଁ ଅଂଶ ପରିତ୍ୟାଗ କରିବାକୁ ହେବ,
କେଉଁ ଅଂଶ ମାର୍ଜିତ କରିବାକୁ ହେବ ଓ କେଉଁ ଅଂଶ ପରିବର୍ତ୍ତନ
କରାଯିବ, ଏହା ଲେଖକବିଶେଷଙ୍କର ରୁଚି, ପାଣ୍ଡିତ୍ୟ ଓ ଶକ୍ତିର
ପରିମାଣ ଉପରେ ନିର୍ଭର କରେ । ଏ ବିଷୟର ସୀମା ନିରୂପଣ କରିବା
ଅମ୍ଭମାନଙ୍କର ସାଧ୍ୟାୟତ୍ତ ବୋଲି ମନେ ହୁଏ ନାହିଁ । ତେବେ ଏତିକି
ମାତ୍ର ବୋଲିଯାଇ ପାରେ ଯେ ଭିନ୍ନ ଭିନ୍ନ ଲେଖକ ପରିଶ୍ରମ କରି
ଏମାନ ସଂଗ୍ରହ କଲେ ସର୍ବସାଧାରଣ ଲେଖକମାନଙ୍କର ପଟୁତା ଓ
ଅପଟୁତା ନିର୍ଣ୍ଣୟ କରି ଦେବେ ଓ ସର୍ବସାଧାରଣଙ୍କଦ୍ୱାରା ସମାଦୃତ
ଯଥୋଚିତ ଲେଖକଙ୍କୁ ଏ ବିଷୟରେ ଅନୁକରଣ କରିବାକୁ ହେବ ।

ମୁଁ କେତେକ କାହାଣୀ ସଂଗ୍ରହ କରିଥିଲି । ପରେ ଦେଖିଲି ଯେ
ପରିମାର୍ଜିତ ନ ହେଲେ ଉକ୍ତ କାହାଣୀମାନ ପ୍ରକାଶଯୋଗ୍ୟ ହେବ
ନାହିଁ । ଚେଷ୍ଟା କରି ଦେଖିଲି ଯେ ଲୋକର ଗ୍ରାମ୍ୟ ମାଧୁର୍ଯ୍ୟକୁ ଅକ୍ଷୁର୍ଣ୍ଣ
ଭାବରେ ରଖିବାକୁ ଗଲେ ଲୋକନିହିତ ରୁଚି ପରିବର୍ତ୍ତନ କରିବାର
କ୍ଷମତା ମୋର ନାହିଁ । କେମ୍ପି ରୁଚି ପରିବର୍ତ୍ତନ କଲେ ଗଳ୍ପର ମାଧୁର୍ଯ୍ୟ

ରହି ପାରୁ ନାହିଁ । ଏପରି ଦ୍ୱିଧା ଘଟନା ସ୍ଥଳରେ ହତାଶ ନ ହୋଇ ଚେଷ୍ଟା କରିବାର ଆବଶ୍ୟକ । ଯାହା ମୋହର ଚେଷ୍ଟା ସାଧନ କରି ପାରି ନାହିଁ, ତାହା ସମୟକ୍ରମେ ସାଧିତ ହୋଇ ପାରେ ଓ ଯାହା ମୋହର 'କାଠସ୍ୟ କାଠ' ବୁଦ୍ଧିର ଅସାଧ୍ୟ ତାହା ଅନ୍ୟ କୌଣସି ବ୍ୟକ୍ତିଙ୍କର ସହଜସାଧ୍ୟ । ଏହି କ୍ଷୁଦ୍ର ରଚନାଟି ଲେଖିବାଦ୍ୱାରା ମୁଁ ଯଦି ଜଣେ ସୁଦ୍ଧା ସାହିତ୍ୟସେବକଙ୍କ ହୃଦୟରେ କାହାଣୀଲେଖନ-ସ୍ପୃହା ଜାଗ୍ରତ କରି ପାରିବି, ତେବେ ମୋର ଉଦ୍ଦେଶ୍ୟ କେତେକ ଅଂଶରେ ସାଧିତ ହୋଇଅଛି ବୋଲି ନିଶ୍ଚିନ୍ତ ହେବି । ପ୍ରକାଶଥାଉ କି ଭିନ୍ନ ଅଞ୍ଚଳରେ ପ୍ରଚଳିତ ଭାଷାଗତ ବୈଷମ୍ୟ (dialectical peculiarities) ହେତୁ କାହାଣୀମାନଙ୍କୁ ସର୍ବବାଦିସମ୍ମତ ଭାଷାରେ ଲେଖିବା କଷ୍ଟକର ହୋଇ ଉଠେ । ଏଥି ପ୍ରତି ପାଠକମାନଙ୍କ ଦୃଷ୍ଟି ରହିବା ଏକାନ୍ତ ଆବଶ୍ୟକ ।

ପରିଶେଷରେ ବକ୍ତବ୍ୟ ଏହି ଯେ ମୁଁ ଏ ପ୍ରବନ୍ଧ ଲେଖିବା ମଧ୍ୟେ ସ୍ଥିର କଲି ଯେ ଉତ୍କଳଦେଶପ୍ରଚଳିତ କାହାଣୀମାନ ଦୁଇ ଭାଗରେ ବିଭକ୍ତ ହେବାର ଯୋଗ୍ୟ । ପ୍ରଥମ ବାଲୋପଯୋଗୀ କାହାଣୀ, ଦ୍ୱିତୀୟ ବୃଦ୍ଧୋପଯୋଗୀ କାହାଣୀ । ଦ୍ୱିତୀୟ ପ୍ରକାର କାହାଣୀରେ ସାରବତ୍ତାର ମାତ୍ରା ସୁସ୍ପଷ୍ଟ ଭାବରେ ବିଦ୍ୟମାନ । 'ଗୁରୁ ମହାରାଜନପୁଅ କଥା' ଦ୍ୱିତୀୟ ଶ୍ରେଣୀର । କୌଣସି ସାରବାନ୍ ଉଦ୍ଦେଶ୍ୟ ନେଇ ଏ ଶ୍ରେଣୀର କାହାଣୀ-ମାନ କଳ୍ପିତ । ସଂକ୍ଷେପରେ କହିବାକୁ ଗଲେ ସବୁ କାହାଣୀର ମୂଲ୍ୟ ଅଛି ।

# ଦ୍ୱିତୀୟ ସଂସ୍କରଣର ଭୂମିକା ।

କାହାଣୀର ପ୍ରଥମ ସଂସ୍କରଣ ପ୍ରକାଶିତ ହେବା ସମ୍ବନ୍ଧରେ ଏଥି ପ୍ରତି ଲୋକଙ୍କର ଯେଉଁ ପରିମାଣରେ ଆଦର ଥିଲା, ଏଥି ମଧ୍ୟରେ ତାହା ଅନେକ ପରିମାଣରେ ବଢ଼ିଅଛି । କାହାଣୀଗୁଡ଼ିକ ସାହିତ୍ୟର ଏକ ଅଙ୍ଗ ବୋଲି ବର୍ତ୍ତମାନ ସାହିତ୍ୟକ୍ଷେତ୍ରରେ ଗୃହୀତ ହୋଇଅଛି ଏବଂ ସେଗୁଡ଼ିକ ସରଳ ଗ୍ରାମ୍ୟଭାଷାରେ ଲିପିବଦ୍ଧ ହେବାର ଆବଶ୍ୟକତା ଅନେକ ବ୍ୟକ୍ତି ସ୍ୱୀକାର କରିଅଛନ୍ତି । ଏହିଗୁଡ଼ିକ ଲିପିବଦ୍ଧ କରିବା ଯୋଗୁଁ ମୁଁ ଉତ୍କଳର ରାଜା ମହାରାଜା ଓ ସାହିତ୍ୟରଥୀମାନଙ୍କଠାରୁ ଆରମ୍ଭ କରି କୁଟୀରବାସୀ ପର୍ଯ୍ୟନ୍ତ ସମସ୍ତଙ୍କଠାରୁ ଆଶାତୀତ ସହାନୁଭୂତି ପାଇଅଛି ଓ ସେଥିଯୋଗୁ ସମସ୍ତଙ୍କୁ ମୋର କୃତଜ୍ଞତା ଅର୍ପଣ କରୁଅଛି । ପ୍ରଥମ ସଂସ୍କରଣ ପରି ଏହି ସଂସ୍କରଣ ଆଦୃତ ହେଲେ ଶ୍ରମ ସାର୍ଥକ ମଣିବି । ପ୍ରଥମ ସଂସ୍କରଣରେ ୧୦ ଗୋଟି କାହାଣୀ ପ୍ରକାଶିତ ହୋଇଥିଲା । ଏ ସଂସ୍କରଣରେ ଅଧିକ ୧୧ ଗୋଟି ଏପରି ସର୍ବ ସୁଦ୍ଧା ୨୧ ଗୋଟି କାହାଣୀ ପ୍ରକାଶିତ ହେଲା । ଏଗୁଡ଼ିକ "ଉତ୍କଳ ସାହିତ୍ୟ"ରେ ପୂର୍ବେ ପ୍ରକାଶିତ ହୋଇଥିଲା । କଳେବର ବୃଦ୍ଧି ଭୟରେ ଆହୁରି କେତେଗୋଟି କାହାଣୀ ଏ ପୁସ୍ତକରେ ସନ୍ନିବେଶିତ ହୋଇ ପାରି ନାହିଁ । ଭବିଷ୍ୟତରେ ସେଗୁଡ଼ିକ ପ୍ରକାଶ କରିବାର ବାସନା ରହିଲା । ଇତି ।

ଗୋପାଳଚନ୍ଦ୍ର ପ୍ରହରାଜ ।

# ସମର୍ପଣ ।

ଏ କ୍ଷୁଦ୍ର ପୁସ୍ତିକା ଖଣ୍ଡିକ

'ଉତ୍କଳ ସାହିତ୍ୟ'ର

ସମ୍ପାଦକ

ଶ୍ରୀଯୁକ୍ତ ବିଶ୍ୱନାଥ କର ମହୋଦୟଙ୍କ

ହସ୍ତରେ ଶ୍ରଦ୍ଧାର ଚିହ୍ନସ୍ୱରୂପ

ଅର୍ପଣ କଲି ।

ପ୍ରଣତ

ଗୋପାଳ

# ସୂଚୀପତ୍ର ।

# ଉତ୍କଳ କାହାଣୀ ।

## ଚକୁଳିଆ ପଣ୍ଡା କଥା ।

( ସୁନାନାକୀ ନଥ । )

କଥାଟିଏ କହୁଁ, କଥାଟିଏ କହୁଁ ।
କିସ କଥା ? ବେଙ୍ଗ କଥା ।
କି ବେଙ୍ଗ ? ଠୁସ ବେଙ୍ଗ ।
କି ଠୁସ ? ବ୍ରାହ୍ମଣସଣ୍ଢ ।
କି ବ୍ରାହ୍ମଣ ? ଶୁଣ୍ଢ ବ୍ରାହ୍ମଣ ।
କି ଶୁଣ୍ଢ ? ପଠାମଧ ।
କି ପଠା ? ଡାଲ ଗଇଁଠା ।
କି ଡାଲ ? ଯୋଡ଼ିଷମାଳ ।
କି ଯୋଡ଼ିଷ ? ଅଷ୍ଟଯୋଡ଼ିଷ ।
କି ଅଣ ? କାଆଁଣ ।
କି କାଆ ? ଚଢ଼େଇଆ ।
କି ଉଷା ? ଖଣ୍ଡିଖଷା ।
କି ଖଣ୍ଡି ? ପେଡ଼ଠା ଲଣ୍ଡି ।
କି ପେଡ଼ା ? ଝାଡ଼ ପଡ଼ା ।
କି ଝାଡ଼ ? କଣ୍ଟା ବାଡ଼ ।
କି କଣ୍ଟା ? କାଳକୋଳି କଣ୍ଟା ।
ଯଧାଁରେ ଲାଗିବ ଲନାଧନ ।